# ବସନ୍ତ ରାସ



ପିଣ୍ଡିକ ଶ୍ରୀଚନ୍ଦନ କୃତ

# ବୃହତ୍

# ବସନ୍ତ ରାସ

ଶ୍ରୀ ଅଜୟ୍‌କୁମାର ଘୋଷଙ୍କ ଦ୍ୱାରା

ତୃତୀୟବାର ପ୍ରକାଶିତ ।



ଶ୍ରୀ ହରନାଥ ପ୍ରେସ

କଟକ—୨

ମୂଲ୍ୟ ଟ. ୨୫ ଦୁଇଟଙ୍କା ଆଠଅଣା ମାତ୍ର

# ବସନ୍ତ ରାସ



ଶ୍ରୀ ଶ୍ରୀ ରାଧାକୃଷ୍ଣାଭ୍ୟାଂ ନମଃ ।

## ବନ୍ଦାପନା

ଗୋପ ଗୋପିପ୍ରେ, ଅର୍ଘ୍ୟ ବନ୍ଦାନ୍ତ୍ରି, ଜୟ ମଙ୍ଗଳଂ, ଶୁଭ ମଙ୍ଗଳଂ । ପଦ । ଅଷ୍ଟ ସଖୀ ହୋଇ ମେଳ, କରେ ଧରି ଅର୍ଘ୍ୟ ଥାଳୀ, କେହୁ ଦିଏ ହୁଳହୁଳି, ନାଦରେ ହୁଳୀ ଉଚ୍ଛୁଳ । ୧ । କେଉଁ ବାଳୀ ମାରେ ତାଳି, ନାଚେ ଶ୍ୟାମ ଟଳ ଟଳି, ଅଧରେ ଦେଇ ମୁରଲୀ, ବଜାପ୍ରେ ସୁସ୍ୱର କରି । ୨ । ଗୋଧନ ବାହୁଡ଼ା କାଳେ, ଗୋପ ଗୋପାଳଙ୍କ ମେଳେ ନାଚନ୍ତି ନନ୍ଦ ଦୁଲାଳେ, ଧରି ଜାମୁ ଡାଳେ ଡାଳେ । ୩ । ବାମେ ରାଧା ଚନ୍ଦ୍ରାବଳୀ, ମଧ୍ୟେ ନାଚେ ବନମାଳୀ, ଶ୍ରୀଚନ୍ଦନ ମନେ ଭଳି, ଦିଏ ତହିଁ କରତାଳି । ୪ ।

## ବନ୍ଦନା ଶ୍ଳୋକଃ ।

ମାଙ୍ଗଲ୍ୟଂ ଦଧି ଦୀପକାକ୍ଷତଯୁତଂ ରମ୍ଭା ତରୁ ସ୍ଥାପନଂ ।
କୁମ୍ଭଂ ପୂର୍ଣ୍ଣ ଜଳଂ ସୁପୀତ ବସନଂ ଦୁର୍ବାଦଳଂ ତଣ୍ଡୁଳଂ ।
ଚୂତ ପଲ୍ଲବ ନାରିକେଳ ସହିତଂ ପଦ୍ମୋପରି ସ୍ଥାପିତଂ ।
ଶ୍ରୀଗୋବିନ୍ଦ ଦେବାଧିବାସଂ କୁରୁତେ ନାନାଦି ବାଦ୍ୟୋତ୍ସବଂ ॥୧ ।
ବନ୍ଦେ ଗୁରୁନ୍ ସଭକ୍ତାଂଶ୍ଚ ସମ୍ୟକ୍‌ସତୀବତାରକାନ୍ ।
ତତ୍‌ପ୍ରକାଶାଶ୍ଚ ତଚ୍ଛକ୍ତିଃ କୃଷ୍ଣଚୈତନ୍ୟ ସଞ୍ଜକଂ । ୨ ।
ବ୍ରଜସ୍ତ୍ରୀଣାଂ ପ୍ରେମ ପ୍ରବଣ ହୃଦୟେ ବା କ ମଥବା ।
କୃପା ଯୁକ୍ତେ ଭକ୍ତଃ ସ୍ୱନିଜ ଧନଦାନେନ ନିପୁଣଂ ।
ଅପିସ୍ତ୍ୟାମ୍ୱାରାମୋ ଜଇହ୍ୟ ବ୍ରଜ ନିଷ୍ଠା ସୁ-କୁଶଳୋ ।
ବ୍ରଜାନନ୍ଦଂ ବନ୍ଦେ ନବ ଜଳଦ ଜଲୋ ଦରନିଭଂ । ୩ ।
ବାଞ୍ଛାକଳ୍ପତରୁଭ୍ୟଶ୍ଚ କୃପାସିନ୍ଧୁ ଭ୍ୟଏବ ଚ ।
ପତିତାନାଂ ପାବନେଭ୍ୟୋ ବୈଷ୍ଣବେଭ୍ୟୋ ନମୋ ନମଃ । ୪ ।

ଗୃହ୍ୟଂ ଗୋପୀ ବୁରାସ୍ପଦଂ ନିଜଗତାଂ ସାର ଜଯ୍ୟିତ୍ୱା ବୃତଂ ।
ଯସ୍ୟା ନାସ୍ତପଟ୍ଟଂ ପ୍ରସାଦ ସୁଲଭଂ ଗୋବିନ୍ଦପାଦାମ୍ବୁଜଃ ।
ଅଦ୍ୟା-ଶକ୍ତିମଶେଷ ଲୋକ ଜନନୀ ବ୍ରହ୍ମାଦଭିର୍ବନ୍ଦିତା ।
ବନ୍ଦେ ତାଂ କୁଳଦେବତା ମିବ ମହାମାୟା ଜଗନ୍ମୋହିନୀଂ । ୫ ।
ବନ୍ଦେ ରୁଦ୍ର ବିରଞ୍ଚି ନାରଦ ଶୁକ ବ୍ୟାସୋଽଥବା କୁରବଂ ।
ପ୍ରହ୍ଲାଦାର୍ଜୁନ ଅର୍ଯ୍ୟମାରୁତ ମୁଖାନ୍ ଶ୍ରୀବାସୁଦେବ ପ୍ରିୟାନ୍ ।
ଯତ୍କୀର୍ତ୍ତି ସୁର ନିମ୍ନଗେଚ ବିମଳା ତୈଲୋକ୍ୟ ସେବ୍ୟାପ୍ୟନା
ସ୍ୱଗେନ୍ଦ୍ରସ୍ୟ ଗଣେ ବିବସ୍ୱ ବହତାଂ ପାନେ ସୁଦେ ବାହରେତ୍ ।
ଅଜ୍ଞାନ ତମିରାନ୍ଧସ୍ୟ ଜ୍ଞାନା-ଞ୍ଜନଶଳାକୟା ।
ଚକ୍ଷୁରୁନ୍ମିଳିତଂ ଯେନ ତସ୍ମୈ ଶ୍ରୀ ଗୁରୁବେ ନମଃ ।

ପୟାର ।

ଅଜ୍ଞାନ ତମିରେ ଚକ୍ଷୁ ଅନ୍ଧ ହୋଇଥିଲା । ଜ୍ଞାନାଞ୍ଜନ ଦୟା ଯେହୁ ପ୍ରକାଶ କରିଲ ହେ । ୧ । ଏବଂ ଭୂତ ଶ୍ରୀଗୁରୁ ଚରଣତଳେ ଆମି । ପୁନଃ ପୁନଃ ହୋଇଁ ନିରନ୍ତରେ ପରଣାମି ହେ । ୧ । କୋଟି ଜନ୍ମାର୍ଜିତ ପୁଣ୍ୟେ ଯେ ଲବ୍ଧ ନା ହଏ । ଗୁରୁ କୃପା ହେଲେ ସେହୁ ଅଳ୍ପରେ ମିଳଯେ ହେ ।୩। ଯାହା ହେତେ ବୈଷ୍ଣବେ ସୁ-ମଙ୍ଗଲ ଘଟନା । ଅଜ୍ଞାନୀ ପିଣ୍ଡିକ କରେ ସେ ପାଦ ଭାବନା ହେ । ୪ ।

ଓଡ଼ିଆ ।

ଅଜ୍ଞାନ ତମିରେ ଚକ୍ଷୁ ମୋର । ଘୋଟିଥିଲେ ମହା ଅନ୍ଧକାର । ୧ ।
ଜ୍ଞାନାଞ୍ଜନ ଦୟାଁ ପ୍ରକାଶିଲ । ଏବଂଭୂତ ଗୁରୁ ପାଦ ତଳ । ୨ ।
ପୁନଃ ପୁନଃ ନିରନ୍ତରେ ଅମି । ପ୍ରନମିତ ହେଉଛୁଁ ହେ ସ୍ୱାମୀ । ୩ ।
କୋଟି ଜନ୍ମାର୍ଜିତ ପୁଣ୍ୟ କର । କେବେହେଁ ସେ ଲବ୍ଧ ନୁହେ ସବ ।
ଯା ହେତେ ବୈଷ୍ଣବ ସୁମଙ୍ଗଳ । ଦୀନ ଶ୍ରୀଚନ୍ଦନ ହୋଇଁ ଭୋଳ । ୫ ।

ଶ୍ଳୋକ ।

ଯତ୍କୃପା ଲେଶମାତ୍ରେଣ ମୂଢ଼ୋଽପି ବିବୁଧାୟତେ ।
ଶବ୍ଦ ପ୍ରାପ୍ନନେ ତସ୍ମୈ ଶ୍ରୀ ଶିକ୍ଷାଗୁରବେ ନମଃ ।

ପୟାର ।

ଯାର କୃପାବନ୍ଦୁ ପାଇଁ ଅତି ମୂଢ଼ଜନ । ମୂଢ଼ ହୋଇ ରାଧା କୃଷ୍ଣ ଲୀଳାର ଗାୟନ ହେ । ୧ । ବିବୁଧାଦ ତାର ସନେ ନା ହଏ ସମତା । ସେହୁ ଶବ୍ଦରୂପେର ପାଦେ ଆମାର ନମ୍ରତା ହେ । ୨ । ସେହୁ ଶିକ୍ଷା ଗୁରୁ ବଟେ ସାକ୍ଷାତ କୃଷ୍ଣୋଦ୍‌ଧ ଧୂଲିତେ ଲୁଟିଯିଁ । ବନ୍ଦନା ହୃତ କର ହେ । ୩ ।

ଶ୍ଳୋକଃ ।

ସ୍ୱୈର ଭଙ୍ଗି ତ୍ରୟ ପରିଚିତାଂ ସାଚି ବିସ୍ତୀର୍ଣ୍ଣ ଦୃଷ୍ଟିଃ ।
ବଂଶୀନ୍ୟସ୍ତାଧର କିଶଲୟ ମୁଜ୍ଜ୍ୱଳଂ ଚନ୍ଦ୍ରକେଣ ।
ଗୋବିନ୍ଦାଖ୍ୟଂ ହରି ତନୁମିତା କେଶି ତୀର୍ଥୋପକଣ୍ଠେ ।
ମାପ୍ରେକ୍ଷିଷ୍ଟଂ ତବ ଯଦି ସଖେ ବନ୍ଧୁସଙ୍ଗେ ଶ୍ରୀରଙ୍ଗଃ ।

ପୟାର ।

ତ୍ରିଭଙ୍ଗି ଭଙ୍ଗିମା ସ୍ମିତ ହାସ୍ୟ ଭଙ୍ଗୀ ଗୃଷ୍ଟ । ଇଷତ ନେତ୍ରାନ୍ତେ ଚାଲେ ସଖୀ ଧୃଷ୍ଟ ମେଷ୍ଟ ହେ । ନବ କିଶଳୟ ଓଷ୍ଟେ ବଂଶୀ ନ୍ୟସ୍ତ ହୋଇଛେ । ଉଜ୍ଜ୍ୱଳ ଚନ୍ଦ୍ରକ ଚୂଳ୍ ଶିରେ ସାଜେ ସ୍ୱଚ୍ଛେ ହେ । ତନୁ ମନୋହର ରୂପ ଶ୍ୟାମଲ୍ ସୁନ୍ଦର । ଓରେ ମନ କେଶିତୀର୍ଥ ତୀରେ ତାଙ୍କେ ହେର ହେ । ଶ୍ରୀରଙ୍ଗେର ଅଙ୍ଗେ ନେହ ସଖେ ବନ୍ଧୁ ହୟ । କର ତାର୍ମୃତ ପାନ ଓରେ କର୍ଣ୍ଣ ଦ୍ୱୟ ହେ । ଓରେ ପାମର୍ ମନ ବାଉଲେର ବାକ୍ୟ ମାନ । ସ୍ଥିର ହୟା ରାଧା କୃଷ୍ଣ ଲୀଳା ଗାନ ଶୁନ ହେ । ୫ ।

ଶ୍ଳୋକଃ ।

ନବୀନ ଘନ ସୁନ୍ଦରଂ କଲିତ କେକୀ ପୁଚ୍ଛୋଜ୍ଜ୍ୱଳଂ ।
ସୁବର୍ଣ୍ଣଂ ରୁଚିରାମ୍ବରଂ କ୍ୱଣିତ ବେଣୁନାଦ ମୁହୁଃ ।
କଳିନ୍ଦ ତନୟା ତଟେ ଲଲିତ ଗୋପ କନ୍ୟା ବୃତଂ ।
କଦମ୍ବ ତଲ ଲମ୍ପଟଂ କମଲପତ୍ରନେତ୍ରଂ ଭଜେ ।

ପୟାର ।

ନବୀନ ଘନ ସୁନ୍ଦର ଶ୍ୟାମଲ ମୂରତି । କଲିତ କେକୀ ପୁଚ୍ଛେତେ ଉଜ୍ଜ୍ୱଲିତ ଅତି ହେ । ୧ । ସୁବର୍ଣ୍ଣ ରୁଚିରାମ୍ବର ଶୋଭେ ଦୀପିତେତ । କ୍ୱଣିତ ବେଣୁ ବାଦନ ମୁହୁଃ ସୁପ୍ରକଟ ହେ । ୨ । କଲିନ୍ଦତନୟା ତଟେ ଅତି ସୁଲଲିତ । ଗୋପକନ୍ୟା ଗଣପାଶେ ହଇଛେ ଅବୃତ ହେ । ୩ । କଦମ୍ବ ତଲ ଲମ୍ପଟ କମଲ୍ ନୟନ । ଶୁନହେ ସାଧୁଜନା ଏହୁ ରୂପ କର ଧ୍ୟାନ ହେ । ୪ ।

ଶ୍ଳୋକଃ ।

ବନ୍ଦେ ରାଧାଂ ପ୍ରମତ୍ତଂ ମଦନ କଲଯୁତାଂ ପଦ୍ମବନ୍ଧାଂଏ ସୁଦାସାଂ ।
ହେମାଙ୍ଗୀ ଗୃଷ୍ଟଭୂଷାଂ ରସ ଜଲଧି ତନୁ କଙ୍କିଣୀଂ ନୂପୁରାଢ୍ୟାଂ ।
ରମ୍ୟାଂ ଦୃଗାଞ୍ଚଳାନ୍ତାଂ ବୟସି ଗଣଯୁତାଂ ନୀଳବସ୍ତ୍ରାବୃତାଂତାଂ ।
ପାଣୌ ତାମ୍ବୁଲପୂର୍ଣ୍ଣାମପର କ୍ରଜକରେ ଦର୍ପଣାଂ ବାସୋପିଧାନି । ୧୨ ।

ପୟାର ।

ବନ୍ଦ ଶ୍ରୀକିଶୋରୀ ରାଧେ ରସନାର ବାଡ଼, ଯାର ଆରାଧନେ ମିଳେ କୃଷ୍ଣ ପଦଦ୍ୱନ୍ଦ ଗୋ । ୧ । ମଦନମ୍ମଦ କଲ ଯୁକ୍ତା ପଦ୍ମଦଲ ନେତ୍ରା, ହେମାଙ୍ଗୀଗୃହ ମଣ୍ଡନା ରସସିନ୍ଧୁ ଗାତ୍ରା ଗୋ । ୨ । ରମ୍ୟା ବୃନ୍ଦାବନ ସ୍ଥିତା ସଖୀ ଗଣ ଯୁତା; ସ୍ୱର୍ଣ୍ଣ ନୀଳ ଅମ୍ବର ସର୍ବାଙ୍ଗେ ଆବୃତା ଗୋ । ୩ । ପକ୍ୱ ନାଗବଲ୍ଲି ଦଲ ବୀଟିକା ଶ୍ରୀହସ୍ତ, ବାମଭୁଜେ ବାମ ଶ୍ୟାମ ବାମ ପାର୍ଶ୍ୱେ ସ୍ଥିତ ଗୋ । ୪। ଓରେ ପାମର ମନ ବାଉଲେର ବାଙ୍ଗ୍ୟ ମାନ, ଜାଣି ଦବା ଏହିରୂପ ହୃଦେ କର ଧ୍ୟାନ ହେ । ୫ ।

ଝୌଲ ।

ବନ୍ଦ ରାଧା ପଦ, ଅମୂଲ୍ୟ ସମ୍ପଦ, ସଖୀଗଣ କୋଟିଜାଧି ଗୋ ।
ନବୀନ କିଶୋରୀ, କୃଷ୍ଣ ମନୋହାରୀ, ସଦା କାନ୍ତକେ ଆରାଧି ଗୋ ।
ଏହି ଗୁଣେ ନାମ ରାଧା, ସବ ନାରୀ ଶିରୋମଣି ସିଧା ଗୋ । ୧ ।
ମଦନ ମାଦେଣି, କେଲି ଉନ୍ମାଦନି, ପ୍ରଫୁଲ୍ଲ ପଦ୍ମ ବଦନି ଗୋ ।
ମୀନ ଖଞ୍ଜନ, ଗଞ୍ଜନ ସୁନୟନ, ଗୃହ କନକ ଅଙ୍ଗିନି ଗୋ ।
ମନୋହର ବେଶ ଭୂଷା, ରସଜଳଧି ତନୁ ସୁରସା ଗୋ । ୨ ।
କଟିତେ କିଙ୍କିଣି, ବାଜେ କିଣି କିଣି, ପଦୟରେ ରତ୍ନନୂପୁର ଗୋ ।
ମଦନ ରାଜାର, ନାଗରୀ କିଶୋର, ଝୁମୁ ଝୁମୁ ନାଦ ଘୋର ଗୋ ।
କୃଷ୍ଣ କର୍ଣ୍ଣେତେ ବସ୍ତାରେ, ମନ ଧୈର୍ଯ୍ୟ ଚେତନା ହରେ ଗୋ । ୩ ।
ରମ୍ୟ ବୃନ୍ଦାବନ; ସଦା ଯାର ସ୍ଥାନ, ସଜନୀ ଗଣେର ସନେ ଗୋ ।
ନବ ଜଳଧର, ଜିଣି ଦିବ୍ୟାମ୍ବର ଶୋଭା ପାଏ ଅପଘନେ ଗୋ ।
ମୃଦୁ କୋମଳ ତାମ୍ବୂଲ, ବୀଟା ଧର ଦକ୍ଷ କର ସ୍ଥଳ ଗୋ । ୪ ।
ଶ୍ରୀକୃଷ୍ଣ ଅଧରେ, ଦିଅଁ ପ୍ରେମଭରେ, ବାମକରେ ବାସ ଧରେ ଗୋ ।
ଅତି ଦୀନ ହୀନ, ଦୁଃଖି ଶ୍ରୀଚନ୍ଦନ, ଲୁଣ୍ଠଇ ଦୁଇଟି ପଦୟରେ ଗୋ ।
କୃପାମୟି କୃପାକର, ଶୀଘ୍ରେ ସେବାତେ ନିଯୋଗି କର ଗୋ । ୫ ।

ଶ୍ଲୋକଃ ।

ପଙ୍ଗୁ ଲଙ୍ଘୟତେ ଶୈଳଂ ମୂକୋଽପି ବର୍ତ୍ତିତେ ସ୍ତୁତ ।
ଯତ୍କୃପା ତମହଂ ବନ୍ଦେ କୃଷ୍ଣ ଚୈତନ୍ୟ ମୀଶ୍ୱରଂ ।

ପୟାର ।

ଜୟ ଜୟ ଶ୍ରୀକୃଷ୍ଣ ଚୈତନ୍ୟ ଗୌରଚନ୍ଦ୍ର । ସାକ୍ଷାତ ଈଶ୍ୱର ଯେଇ ମାଧୁର୍ଯ୍ୟ ଅସ୍ୱାଦ ହେ । ୧ । ଯାର କୃପା ଲେଶ ପାଇଁ ପଙ୍ଗୁ ଲଙ୍ଘେ ଗିରେ । ମୂକ ଜନା ଗାଏ ବେଦ ଶାସ୍ତ୍ର ରଚନ କର କହ । ୨ । ସେଇ କୃପା ବାନ୍ଧି ଦିଅ ଆମାର ହୃଦ ଘରେ । ବନ୍ଦନା କରିଛୁ ଅନ ପଦ୍ମାର ଛନ୍ଦରେ । ୩ ।

ଶ୍ଳୋକଃ ।

ଦୁର୍ଗମେ ପଥି ଅନ୍ଧସ୍ୟ ସ୍ଖଳନ୍ ପାଦ୍ଭ ଗତେ ମୁହୁଃ ।
ସ୍ୱକୃପା ଯଷ୍ଟି ଦାନେନ ସନ୍ତୁ ସତ୍ୟାବଲମ୍ବନଃ ॥

ପୟାର ।

ଅତ୍ୟନ୍ତ ଦୁର୍ଗମ ପଥ ଏଭବ ମଧ୍ୟର । ମାର୍ଗ ନା ଦଶଇ ଘୋଟିଯାଛେ ଅନ୍ଧକାର ହେ । ୧ । ଅମି ଅତ ମନ୍ଦଜନା ପାପିଷ୍ଠ ପାମର । ଚଲିତେଛେ ଚଲିତେ ପାଦ ସ୍ଖଳନ ଅମାର ହେ ।୨। ଓହେ ସାଧୁଜନା ତୁମି ପତିତ ପାବନ । ତୁମାର କୃପା-ଯଷ୍ଟି ଦିଅଁ କର ଅଲମ୍ବନ ହେ ।୩। ଜୟ ଜୟ ଗୌର ଭକ୍ତବୃନ୍ଦ ପାଦପଦ୍ମ । ଦୟାବଲେ ଅମାର ହୃଦେ ଦିଅ ଅବେ ସଦ୍ମ ହେ । ୪ । ବନ୍ଦ ଅମି ନିଜ ଗୁରୁ ପଦ ସାରସରେ । ଯାର କୃପା ଭବସିନ୍ଧୁ ହେଲେ ପାରକରେ ହେ । ୫ ।

ଶ୍ଳୋକଃ ।

ମେଘୈର୍ମେଦୁରମମ୍ବରଂ ବନଭୁବଃଶ୍ୟାମସ୍ତମାଲ ଦ୍ରୁମୈ
ର୍ନକ୍ତଂ ଭୀରୁରୟଂ ତ୍ୱମେବତଦିମଂ ରାଧେ ଗୃହଂ ପ୍ରାପୟ ।
ଇତ୍ଥଂ ନନ୍ଦନିଦେଶତଶ୍ଚଲିତୟୋଃ ପ୍ରତ୍ୟଧ୍ୱ କୁଞ୍ଜଦ୍ରୁମଂ ।
ରାଧାମାଧବୟୋର୍ଜୟନ୍ତି ଯମୁନାକୂଳେ ରହଃ କେଳୟଃ ।୧୫।

ପୟାର ।

ଏକଦିନେ ନନ୍ଦସନେ ଗୋଷ୍ଠେ କୃଷ୍ଣ ଥିଲ, ଯମୁନାର କୂଳେ କୃଷ୍ଣ ରାଧାକେ ଦେଖିଲ ହେ ॥ ନନ୍ଦ ବୋଲେ ଶୁନ ରାଧେ ବଚନ ଆମାର, ଗଗନେ ଅଚ୍ଛାଦ ମେଘ କୈଲ ଅନ୍ଧକାର ହେ । *ଚଲିଲ କୃଷ୍ଣକେ ଲମ୍ଭା ଭାନୁର ଦୁଲାଲ ପ୍ରତିପଥେ ପ୍ରୀତକୁଞ୍ଜେ ଦ୍ରୁମ ତଳେ ମିଲ ହେ । ଯମୁନାର କୂଳେ ରାଧା ମାଧବ ଏକାନ୍ତେ, ଆରମ୍ଭିଲ ରାସକ୍ରୀଡ଼ା ଜୟ ଜୟ ଯୁକ୍ତେ ହେ । ଏଇ ଅର୍ଥେ ଅଛେ ବହୁ ବରୋଧ ଲକ୍ଷଣ, ନମସ୍କାର ଅଶୀର୍ବାଦ ବସ୍ତୁ ନିଦର୍ଶନ ହେ । ସମର୍ଥ ଶ୍ରୀଜୟଦେବ ସକଲ ବର୍ଣ୍ଣିଛେ, ନମସ୍କାର ଅଶୀର୍ବାଦ ଗ୍ରନ୍ଥ ସ୍ଥଳେ ଅଛେ ହେ । ମାଧବେର ଶବ୍ଦ କୃଷ୍ଣ ଦକ୍ଷିଣ ନାୟକ, ରାଧା ପରକୀୟାରସ କୁମୁଦ ଶଶାଙ୍କ ହେ । ଭକ୍ତମୁକ୍ତ ପରେ ଯେଇ ଉତ୍କର୍ଷ ହଏ, ଯାହା ଆସ୍ୱାଦନେ ରାଧା କୃଷ୍ଣ ପାଦପାଏ ହେ । ଜୟନ୍ତି ଶବ୍ଦେ ଜଗତ ଅଶୀର୍ବାଦ ହବେ, ଏ ଲୀଳା ଭାବିତେ ବ୍ରଜେ ରାଧାକୃଷ୍ଣ ପାବେ ହେ । ଯେଇ ପରକୀୟା ଲୀଳା ପରମ ପାବନ, ତାତେ ନମସ୍କାର କର ହଇତେ ବୃଜନ ହେ । ଗ୍ରନ୍ଥ ସୂଚ କରି କରିବ ବର୍ଣ୍ଣନ, ରାଗ ଭକ୍ତଜନା ମନ କର୍ଣ୍ଣ ଦିଅ ଶୁନ ହେ । କାନ୍ତେ ଗାଢ଼ ମାନ ରାଖିଥିଲ ଭାନୁ ସୁତା, ସଖିର ବଚନେ ହୈଲ ମହା ଅନନ୍ଦିତା ହେ । ସଖିବୋଲେ ତୁମାର ବନେ କୃଷ୍ଣ ବଡ଼

ଦୁଃଖୀ, କୁଞ୍ଜେ ଅଭିସାର ହୟ ପୂର୍ଣ୍ଣଚନ୍ଦ୍ର ମୁଖୀ ଗୋ । ମେଘସମ ଘୋଟିଅଛେ ବହୁଲ ଅନ୍ଧାର, ବନଭୂମି ତମାଲେର ଭ୍ରମ ତମଘୋର ଗୋ ॥ ପୂର୍ବ୍ବେ ଗୃହେ କର-ଯାଛେ ଅପରାଧ ସେଇ, ଏଇହେତୁ ପ୍ରାଣନାଥ ଅସିଛେ ଡରଇ ଗୋ । ମନୋହର କୁଞ୍ଜ ଗୃହେ ଚଲ ଶନୋଦରୀ, ତେଁହାର ତୁମାକେ ତବେ ଅନ୍ନ ଶୀଲମନ ଗୋ । ଏଇବାଣୀ ଶୁନି ରାଧାର ଅନନ୍ଦ ବାଢ଼ିଲ, କିନ୍ତୁ ଅଭିସାରେ ଧନୀ କୁଞ୍ଜେ ଚଲିଲ ହେ । ଯମୁନାର କୂଲେ ରାଧା ମାଧବ ହରଷେ, ଏକାନ୍ତେ ରଜନୀ କଲ ନାନା କ୍ରୀଡ଼ାରସେ ହେ । ଏଇଲୀଲା ଶ୍ରଦ୍ଧାଯୁକ୍ତ ଯେ କରେ ଶ୍ରବଣ, ଅତଏବ ରତି ବାଢ଼େ ଯୁଗଳଚରଣ ହେ ।

ଶ୍ଳୋକଃ ।

ବାଗ୍‌ଦେବତାଚରିତଚିତ୍ରିତଚିତ୍ତସଦ୍ମା ପଦ୍ମାବତୀଚରଣଚାରଣଚକ୍ରବର୍ତ୍ତୀ ।
ଶ୍ରୀବାସୁଦେବରତିକେଳିକଥାସମେତ ମେତଂ କରୋତି ଜୟଦେବକବିଃ ପ୍ରବନ୍ଧଂ ।

ପୟାର ।

ବାଗ୍‌ଦେବତାଚରିତ ଚର୍ଚ୍ଚିତ ଚିତ୍ତବନେ । ଚକ୍ରବର୍ତ୍ତୀ ପଦ୍ମାବତୀଚରଣ ଚାରଣେ ହେ । ପ୍ରବନ୍ଧେତେ ରାଧା କୃଷ୍ଣ ରତିକେଳି କଥା । ଆରମ୍ଭିଲ କବି ଜୟଦେବ ମୃଦୁ ଗାଥା ହେ ।

ଶ୍ଳୋକଃ ।

ବାଚଃ ପଲ୍ଲବୟତ୍ୟୁମାପତିଧରଃ ସନ୍ଦର୍ଭଶୁଦ୍ଧିଂ ଗିରାଂ
ଜାନୀତେ ଜୟଦେବ ଏବ ଶରଣଃ ଶ୍ଳାଘ୍ୟୋ ଦୁରୂହଦ୍ରୁତେ ।
ଶୃଙ୍ଗାରୋତ୍ତରସତ୍ପ୍ରମେୟରଚନୈରାଚାର୍ୟ୍ୟଗୋବର୍ଦ୍ଧନଃ ।
ସ୍ପର୍ଦ୍ଧୀ କୋଽପି ନ ବିଶ୍ରୁତଃ ଶ୍ରୁତିଧରୋ ଧୋୟୀକବିକ୍ଷ୍ମାପତିଃ ।୧୭।

ପୟାର ।

କବି ଉମାପତି ଧର ବଚନ ମଞ୍ଜୁଲ । ପଲ୍ଲବାୟେ ବହୁଜନ ମାନସ କେବଳ ହେ ॥ ସନ୍ଦର୍ଭ ଶୁଦ୍ଧ ବଚନେ ଅଙ୍ଗ ଜନ ଖ୍ୟାତେ । ଶରନେ ଗେଲ ଜୟ-ଦେବ ଚରଣ ଉଲ୍ଲାସିତ ହେ । ଶରଣବତ୍ସଲ ଜୟଦେବ ମହାଶୟ । ରାଖିଲ ହୃଦୟ ମାଝେ ରାଖି ସେହି ଭୟ ହେ । ଏଇଯୋଗୁଁ ସେଇ ସୁଧୀବଚନ ଶୁନିଲ । ରତିତ ପାଷାନ ହୃଦ କରିଲ ତରଲ ହେ । ଶୃଙ୍ଗାର କାବ୍ୟ ରଚନେ ଆର୍ଯ୍ୟ ଗୋବର୍ଦ୍ଧନ । ସେଇତାଏ ସଙ୍ଗେ ହୈତେ ହୈଲ ବିଦ୍ୟମାନ ॥ ଧୋୟୀ କବିରାଜ ଅଟେ ମହା ଶ୍ରୁତିଧର । ଅବଶ୍ୟ ତ ସ୍ୱାଦୁ ସେଇ ରସେର ଭଣ୍ଡାର ହେ ।୭।

ଶ୍ଳୋକଃ ।

ଯଦି ହରି ସ୍ମରଣେ ସରସଂ ମନୋ । ଯଦି ବିଳାସକଳାସୁ କୁତୂହଳଂ ।
ମଧୁରକୋମଳକାନ୍ତପଦାବଳୀଂ । ଶୃଣୁ ତଦା ଜୟଦେବ ସରସ୍ୱତୀଂ ।୧୮।

ପୟାର ।

ଯଦି ହରି ସୁମରଣେ ମାନସେ ଲାଳସା, ଯଦି ସେଇ କେଳି କଳା କୁତୁ-ହଳେ ଆଶା ହେ । ତବେ ସୁରସିକ ଜୟଦେବ ବାଣୀ ଶୁଣ; ମଧୁର କୋମଳ କମନୀୟ ପଦଗଣ ହେ ॥ ରାଗମୟ ଜନା ରାଗ ବନ୍ଧେ ଗୀତ ଶ୍ଳୋକ; କେଲି ମହା କାବ୍ୟ ପଦ୍ମାବତୀର ନାୟକ ହେ ॥ ଯାର କିପା ବଳେ ତାର ବଦନ ଉଦ୍ଗୀର୍ଣ୍ଣ, ଉଚ୍ଛିଷ୍ଟ ଚର୍ବିତ ଇକ୍ଷୁ ଅଙ୍ଗ ଶ୍ରୀଚନ୍ଦନ ହେ । ୪ । ମଧୁର ଆସ୍ୱାଦୀ ଜନା ଦବେ ପ୍ରେମଧନ; ବାତୁଳ ପିଣ୍ଡିକ ମାରେ ଦାନ୍ତେ ଲୟା ତୃଣ ହେ । ୫ ।

ଦୀର୍ଘଛନ୍ଦ ।

ପ୍ରଳୟ ପୟୋଧିବନ ବନ୍ଧୁ ବହୁତ ବଧାନ ଅଖେଦ ଚରିତେ ବେଦଧର । ହେ କେଶବ ପୂର୍ଣ୍ଣଙ୍କର; ହେ ମୀନ ଶରୀର ଧର, ଜୟତୁ ଜଗତ ଈଶ ହରି ହେ । ଜଗନ୍ନିବାସ । ୧ । ପ୍ରବଳ ବିପୁଳ ତବ, ପୃଷ୍ଠେ ବହୁ ମହୀଭାର, ଗରିଷ୍ଠ ସେ ପୃଷ୍ଠ ତୁଷ୍ଟ ଭାର । ବହୁକାଳ ବନ୍ଧ ବର୍ଣ୍ଣ, ଚକ୍ରମତ ସେ ବିସ୍ତୀର୍ଣ୍ଣ; ହେ କେଶବ କୂର୍ମ ରୂପଧାରୀ ହେ । ଜଗନ୍ନିବାସ । ୨ ।

ବସିଅଁ ଦଶନ ଶିଖେ; ଅଛଇ ଅବନୀ ସୁଖେ; ଶଶିତେ କଳଙ୍କ ରେଖା ପରି । ହେ କେଶବ ପୂର୍ଣ୍ଣତର, ହେ ଶୂକର ରୂପଧର ଜୟତୁ ଜଗତ ଈଶ ହରି ହେ । ଜଗନ୍ନିବାସ । ୩ ।

ଶ୍ରୀକର କମଳାକର, ନଖ ଅଦ୍ଭୁତ ଭୂଧର, ଦଳନ କେଲି ଦୈତ୍ୟ ତନୁ ଭୃଙ୍ଗ । ବୀର ହିରଣ୍ୟ କଶିପୁ; ଧରି ନରହରି ବପୁ; ଶ୍ରୀକୃଷ୍ଣ କେଶବ ଶ୍ୟାମଳ ଅଙ୍ଗ ହେ । ଜଗନ୍ନିବାସ । ଜଗଦୀଶ ଜୟତୁ ଶ୍ରୀଅଙ୍ଗ । ୪ ।

ଅଦ୍ଭୁତ ବାମନ ହୋଇଁ; ବଳିଷ୍ଠ ବଳି ଛଳିଯାଇଁ; ନିବିକ୍ରମ ରୂପେତେ ବିକ୍ରମ । ପଦ ନଖ ଜାତ ଜଳ; ଭୁବନ ପାବନ କେଲି, ହେ କେଶବ କାମ ରୂପୀ ତୁମି ହେ । ଜଗନ୍ନିବାସ । ଜଗଦୀଶ ଜୟତୁ ଶ୍ରୀଅଙ୍ଗ; ଶ୍ରୀକୃଷ୍ଣ କେଶବ ଶ୍ୟାମଳ ଅଙ୍ଗ ହେ । ୫ ।

ନାଶିଅଁ ଜଗତ ପାପ, ଶାନ୍ତ କେଲି ଭବତାପ; କ୍ଷତ୍ରିୟ କୁଳ ରୁଧିର ନୀରେ । ତାତେ କରାଇଲ ସ୍ନାନ; ହେ କେଶବ ପର୍ଶୁରାମ; ଏକବିଂଶ ପୃଥ୍ୱୀ ଫିରେ ହେ । ଜଗନ୍ନିବାସ । ଜଗଦୀଶ ଜୟତୁ ଶ୍ରୀଅଙ୍ଗ, ଶ୍ରୀକୃଷ୍ଣ କେଶବ ଶ୍ୟାମଳ ଅଙ୍ଗ ହେ । ୬ ।

ରଣେ ବିତରଣ କେଲି, ମନୋହର ବଳି ଦଳ; ଦଶଦଶେ ଦଶ ବଦନ ହୋଇ । ହେ କେଶବ ରାମରୂପ; ଜୟ ଜଗତ ଅଧିପ; ଅହେ ହରି ତୁମି ଦୈତ୍ୟକ୍ଷୟ ହେ । ଜୟଜୟ ହେ ଅହେ ହରି ତୁମି ସତ୍ୟହୟ ହେ । ୭ ।

କୁନ୍ଦେନ୍ଦୁ ବୃଷଦାଭର, ଅଙ୍ଗେ ଘନ ନୀଳାମ୍ବର; ସେହି ହସ୍ତେ ଏମନ୍ତ ପ୍ରତୀତ । ଲଙ୍ଗଳ ଅଘାତ ଗ୍ରାସେ, ଯମୁନା ଶରନ ହେତେ, ଦାହ୍ୟାଛ ନାଶିଯୁଁ । ସେଇଭ୍ରାନ୍ତ ହେ । କେଶବ ତୁମି ହଳଧର ରୂପଧାରୀ । ଜୟତୁ ଜଗତ ଈଶ ହରି ହେ । ୮ ।

ସଦୟ ହୃଦୟ ହୟ୍ୟା; ପଶୁବଧ ନିଷେଧିଆଁ; ନିନ୍ଦ ଶ୍ରୁତ ଜାତ ଯଜ୍ଞବଧି । ହେ କେଶବ ବୌଦ୍ଧରୂପ, ଜୟ ଜଗତ ଅଧିପ; ଓହେ ହରି ତୁମି ଦୟାନିଧି ହେ । ଜଗନ୍ନିବାସ, ବଧି ବଧି କଇଲ ଅବଧି ଓହେ ହରି ତୁମି ଦୟାନିଧି ହେ । ୯ ।

ନିବାରଣେ ମ୍ଳେଚ୍ଛ କୁଳ, କରେ ଧରି କରବାଳ, ଧୂମକେତୁ ରାମ ସେ କରାଲ ହେ । ହେ କେଶବ କଳ୍କୀରୂପ, ଜୟ ଜଗତ ଅଧିପ, ସର୍ବେଶ୍ୱର ନନ୍ଦେର ଦୁଲାଲ ହେ । ଜଗନ୍ନିବାସ । ତୁମି ହୟ ଦଶବିଧ ରୂପ, ହେ କେଶବ ତୁମି କଳ୍କୀଂ ରୂପ ହେ । ୧୦ ।

ଶ୍ଳୋକଃ ।

ବେଦାନୁଦ୍ଧରତେ ଜଗନ୍ନିବହତେ, ଭୂଗୋଳ ମୁଦ୍ବିଭ୍ରତେ ।
ଦୈତ୍ୟାନ୍ ଦାରୟତେ, ବଳିଂ ଛଳୟତେ, କ୍ଷତ୍ରକ୍ଷୟଂ କୁର୍ବତେ ।
ପୌଲସ୍ତ୍ୟଂ ଜୟତେ, ହଳଂ କଳୟତେ, କାରୁଣ୍ୟମାତନ୍ୱତେ ।
ମ୍ଳେଚ୍ଛାନ୍ ମୂର୍ଚ୍ଛୟତେ; ଦଶାକୃତକୃତେ, କୃଷ୍ଣାୟ ତୁଭ୍ୟଂ ନମଃ । ୧୧ ।

ଦୀର୍ଘଚ୍ଛନ୍ଦ ।

ବେଦୋଦ୍ଧାର ଧରାଧର, ଧରୋଦ୍ଧାର ନରହର, ବଳି ଛଳ କ୍ଷତ୍ରିକ୍ଷୟ କର । ରାବଣାରି ହଳଧାର, କ୍ରତୁଦ୍ୱେଷି ମ୍ଳେଚ୍ଛହାର, ନମାମି ଶ୍ରୀକୃଷ୍ଣ ବଂଶୀଧାର ହେ । ନନ୍ଦନନ୍ଦନ, ତୁମାର ଅଂଶାଂଶ ଅଂଶ ହେନ, ତୁମି ହୟ ରାଧା ପ୍ରାଣଧନ ହେ ।।

ଦଶବିଂଶତ ଦ୍ୱାବିଂଶ, ଚତୁଷର୍ଷ୍ଟି ପରକାଶ, ଚତୁର୍ଦ୍ଦଶ ଚତୁଃସହସ୍ର କୃତ । ବ୍ରହ୍ମାର ଶତାବ୍ଦି ହେତେ, ଚତୁର୍ଦ୍ଦଶ ମନୁ ତାତେ, ପ୍ରକଟାୟ୍ୟା ଖେଲ ଲୀଳା ଭୂତ ହେ । ନନ୍ଦନନ୍ଦନ, ତୁମାର ଅଂଶାଂଶ ଅଂଶ ହେନ, ତୁମି ହୟ ରାଧା ପ୍ରାଣଧନ ହେ । ୨ ।

ଚତୁର୍ଦ୍ଦଶ କୋଟିଲକ୍ଷ, ପଞ୍ଚ ଚତ୍ୱାରିଂଶଲକ୍ଷ, ଚତ୍ୱାରିଂଶ ଅବତାର ଇତ । ଅର ଯତ ଅବତାର ଅନନ୍ତ ବ୍ରହ୍ମାଣ୍ଡୋଦର, ଅନନ୍ତକୋଟି ବ୍ରହ୍ମାଣ୍ଡେ ସ୍ଥିତ ହେ । ନନ୍ଦନନ୍ଦନ ତୁମାର ଅଂଶାଂଶ ଅଂଶ ହେନ, ତୁମିହୟ ରାଧା ପ୍ରାଣଧନ ହେ ।।

ଅଗୋ ଦାସି ଭକ୍ତଗନ, କର୍ଣ୍ଣେ ମନଦଅ ଶୁନ, ବାସନ୍ତିକ ଅଧିବାସ ଗାନ । କିଶୋରୀ ଚରନେ ସେବ, ଅନାୟାସେ କୃଷ୍ଣ ପାବ, ମନେର ବାସନା ହବେପୂର୍ଣ୍ଣ ଗୋ । ସଙ୍ଗିନୀ ଶ୍ରୀନନ୍ଦନ ମାଗେ ପ୍ରେମଭିକ୍ଷ୍ୟା, କେମନ୍ତ ପାଇବ ଦବେ ବାଞ୍ଛା ଗୋ । ୪ ।

କମଳା କୁଚ ମଣ୍ଡଳ, ଧୃତମକରକୁଣ୍ଡଳ, କଳିତ କଳିତବନମାଲ । ରବି ମଣ୍ଡଳ ମଣ୍ଡନ, ପ୍ରବଳ ଭବଖଣ୍ଡନ, ମୁନିଜନ ମାନସ ମରାଳ ହେ । ଜୟ ଜୟ ହେ, ଜୟ ଦେବ ହରେ ଜଗନ୍ମୟ ହେ । ୧ ।

କାଳୀୟ ନାଗ ଗଞ୍ଜନ; ଅଖିଳ ଜନ ରଞ୍ଜନ; ଯଦୁକୁଳ ନଳିନ ଦୀନେଶ । ମଧୁ ନରକ ନାଶନ, ମୁରାରି ଗରୁଡ଼ାସନ; ସୁରକୁଳ କିଦାନ ବିନାଶ ହେ । ଜୟ ଜୟ ହେ, ଜୟ ଦେବ ହରେ ଜଗନ୍ମୟ ହେ । ୨ ।

ଅମଳ କମଳ ଦଳ, ଲୋଚନ ଭବମୋଚନ ଶୀଳ, ତ୍ରିଭୁବନ ଭୁବନ ନିଧାନ । ଜନକ ସୁତା ଭୂଷନ; କଇଳଜିତ ଦୂଷନ; ସମରେ ନାଶିଲା ଦଶାନନ ହେ । ଜୟ ଜୟହେ; ଜୟ ଦେବ ହରେ ଜଗନ୍ମୟ ହେ । ୩ ।

ଅଭିନବ ଜଳଧର; ସୁନ୍ଦର ଧୃତମନ୍ଦର; ରମାବଦନ ଚନ୍ଦ୍ରମା ଚକୋର । ଶ୍ରୀଜୟଦେବ ଚରନ, ଶନ୍ତ କହେ ଶ୍ରୀଚନ୍ଦନ, କବେ ହବେ ଏଇ ହୃଦ ହର ହେ । ମୋହନ, ମୁରଲୀ ବଦନ ଶ୍ୟାମଘନ, ରାଧାବଲ୍ଲ ଶ୍ରୀନନ୍ଦନନ୍ଦନ ହେ ।

ଦୀର୍ଘଚ୍ଛନ୍ଦ ।

ଜୟ ଜୟ ବୃନ୍ଦାବନ, ଜୟ ଯମୁନାପୁଲିନ, ଜୟ ଜୟ ମଳୟ ପବନ । ଜୟ ସୁବସନ୍ତ କାଳ, ଚନ୍ଦ୍ରମା ଭୃଙ୍ଗ କୋକିଳ, ଶୁକ ସାରି କିତ ଭୁବନ ହେ । ଜୟ ଜୟ ହେ । ଜୟ ରାସରାଜି ରସମୟ ହେ । ୧ ।

ଊହା ।

ଜୟ ଜୟ ଶ୍ରୀ ରାଧିକେ । ଜୟ ଜୟ ଗାନ୍ଧର୍ବିକେ । ୧ ।
ଜୟଜୟ ବୃଷଭାନୁ ସୁତେ । କୃଷ୍ଣ ପ୍ରିୟସିକେ ସୁରସିକେ । ୨ ।
ରତିମୋହି ମଦନ ମୋହନ । କିଛୀ ନୂତନ ତନୁ ଅପଘନ । ୩ ।

ଦୀର୍ଘଚ୍ଛନ୍ଦ ।

ଜୟ ଯୁଗଳ ସୁଖରାଶି, ଜୟ ଜୟ ପୌର୍ଣ୍ଣମାସୀ, ଦେବୀ ଭଗବତୀ ଯୋଗମାୟା । ବସନ୍ତ ବିଳାସ ସ୍ଥଳ, ଦରଶନେ କୃପାକର, ବସନ୍ତ ବସନ ପଦଛାୟା ଗୋ । ପାବନ ପାବନ କର ମୋରେ । ମତ ଦବେ ଯୁଗଳ ପୟରେ ଗୋ ।

ଶ୍ଳୋକଃ ।

ଅରକ୍ତାଭ୍ୟାଂ ତ୍ରିନେତ୍ରା ମଣି ମୁକୁଟ ବତ ରତ୍ନ ତାଟଙ୍କାଂ ରମ୍ୟା ।
ହସ୍ତାମ୍ଭୋଜିସ୍ତ ପାଶାଙ୍କୁଶ ମଦନ ଧନୁ ପଞ୍ଚବାଣୈସ୍ତୁ ବର୍ଣ୍ଣ ।
ଅପିନୋ ଭୃଙ୍ଗ ବକ୍ଷ୍ୟୋ ରହତଟ ବିଲସଦ୍ଭାର ହାର ଜ୍ୱଳାଙ୍ଗି ।
ଧ୍ୟାନିମମ୍ଭୋଜହସ୍ତା ମରଣଧି ବସନାମୀଶ୍ୱରୀ ମାଶ୍ରୟାମି । ୨୦ ।

ଦୀର୍ଘଛନ୍ଦ ।

ଅରୁଣ ଅରକ୍ତ ବର୍ଣ୍ଣ, ବିନୋଦ ତରଙ୍ଗ ଘୂର୍ଣ୍ଣ, ମୁକୁଟ ଛାଟଳ ରମ୍ୟ ରନ୍ଧ୍ର। ଚତୁର ହସ୍ତ ପଙ୍କଜେ. ପାଶ ଅଙ୍କୁଶ ବିଭ୍ରାଜେ, କାମଧନୁ ପଞ୍ଚଶର ଯନ୍ତ୍ର ଗୋ । ବନଦେବି ଗୋ । ପାବନୀ ପାବନ କର ମୋରେ, ମତ ଦବେ ଯୁଗଳ ପଦ୍ମରେ ଗୋ । ୧ । ପୀନ ତୁଙ୍ଗ ପୟୋଧର, ଉଚ୍ଚ ବିଳାସ ଭୁଷର, ହାର ଭାର ଉଜ୍ଜ୍ୱଳ ସୁଗ୍ରୀବା । ଜଗଦ୍ଧାତ୍ରୀ ପଦ୍ମହସ୍ତା, ରକ୍ତାମ୍ବର ପରିବୃତା, ଈଶ୍ୱର କୁମାର ପଦାଶ୍ରିତା ଗୋ । ବନଦେବି ଗୋ । ପାବନୀ ପାବନ କର ମୋରେ, ମତ ଦବେ ଯୁଗଳ ପଦ୍ମରେ ଗୋ । ୨ । ଅନୁରାଗ ଭଙ୍ଗେ ଭଙ୍ଗ, ବଦନ ବର ତରଙ୍ଗ, ବସନ ଭୂଷଣ ବେଶ ବାସ । ମାଣିକ୍ୟ ବଳୟ ଗଣ, ରଙ୍ଗମାଳ୍ୟ ଆଭରଣ, ମାଣିକ୍ୟ କୁଣ୍ଡଳେ ଅଭିଳାଷ ଗୋ । ବନଦେବି ଗୋ । ପାବନୀ ପାବନ କର ମୋରେ । ମତ ଧବ ଯୁଗଳ ପଦ୍ମରେ ଗୋ । ୩ । ମଧୁଋତୁ ସୃଷ୍ଟି ବିଧାତା, ପରକୀୟ ପ୍ରକାଶିତା, ବିଳାସ ଜଳଧି ସୁଧାନିଧି । ଶ୍ରୀ ରାଧା ଅଧରୁ ଜାତ, ଯେବଣିଠ ଦ୍ୱାରେ ଖ୍ୟାତ, ପଞ୍ଚରସ ସଞ୍ଚ-ୟନେ ନିଧି ଗୋ । ବନଦେବି ଗୋ । ପାବନୀ ପାବନ କର ମୋରେ, ମତ ଦିବ ଯୁଗଳ ପଦ୍ମରେ ଗୋ । ୪ । ଜୟ ବୃନ୍ଦେ ଯୁଥେଶ୍ୱରୀ, ଶ୍ରୀ ବୃନ୍ଦାବନ ଈଶ୍ୱରୀ । ଦ୍ୱାସ୍ଥ ରାଧା କିନ୍ତୁ ଲୀଳ ଦ୍ୱାର । ଯାର ହସ ଏକଦେଶ, ସହସ୍ରେ ଶିର ପୁରୁଷ, ଅନନ୍ତ କୋଟି ବ୍ରହ୍ମାଣ୍ଡେଶ୍ୱର ଗୋ । ବନଦେବି ଗୋ । ପାବନୀ ପାବନ କର ମୋରେ । ମତ ଦିବ ଯୁଗଳ ପଦ୍ମରେ ଗୋ । ୫ ।

ଚୂଡ଼ା ।

ବିତଳ୍ପ ଲୋକଙ୍କେ ନୟନେବ । ରାଗଋରେ ରଙ୍ଗ ନିଜଗାବ । ୧ ।
ଚତୁର୍ବର୍ଗ ପ୍ରପାଳନେ ଯାର । ଗୃହସ୍ଥ ଚତୁର୍ଭୁଜ ଚମତ୍କାର । ୨ ।
ବିପାଦର ସର୍ଶ ଭକ୍ତଗଣେ । ବସନ୍ତ ବିଳାସ ଦରଶନେ । ୩ ।
ଜୟ ଜୟ ବୃନ୍ଦାବନ ଚନ୍ଦ୍ର । ଜୟ ଜୟ କୁଞ୍ଜବନ ଇନ୍ଦ୍ର । ୪ ।
ଜୟ ରାଧେ ମଦନମୋହନ । ରାଧାବନ୍ଧୁ ନନ୍ଦେର ନନ୍ଦନ । ୫ ।
ଜୟ ଶ୍ରୀ ଗୋବିନ୍ଦ ଜୟ ଜୟ । ଅଦି ଅନାଦିର ପ୍ରଭୁ ହୟ । ୬ ।
ଅନନ୍ତ ଲକ୍ଷ୍ମୀର ସେବ୍ୟମାନ । ମନ୍ମଥ ମନ୍ମଥ ଶ୍ୟାମଘନ । ୭ ।

ଦୀର୍ଘଛନ୍ଦ ।

ଜୟଜୟ ଗୋପୀନାଥ, ବ୍ରଜେର ବାଳକ ସାଥ, ନନ୍ଦେରନନ୍ଦନ ବଂଶୀ-ଧାରୀ । ଠାକୁରାଣୀ ସହ ବନ୍ଦେ, ତନିଠାକୁର ପଦ ଦ୍ୱନ୍ଦେ, ଅଭୀଷ୍ଟ ପୂରଣେ ମଗ୍ନ ଭରି ହେ । ମୋହନ । ୧ । ଯୁଗଳ ରଚନ ଧୂଳି, ଢାଳିଅଁ କରିବ ଝୋଲି, କଖନ୍ ମୋରେ ଏହୁ ଅଜ୍ଞା ଦବେ । କରି କୋଟି ନମସ୍କାର, ଶରନ୍ ମାଗୁଁ

ବାରମ୍ବାର, କିପାଇବ କିପାଇବ ଯବେ ହେ । ମୋହନ ।•ବ୍ରଜେର ଯତ ଅଙ୍ଗନା, ମାଙ୍ଗେ ଯତ ମାନ୍ୟଜନା, ସବେ ଏହୁ ଆଶୀର୍ବାଦ କର । କିଶୋର ଅସୁସ୍ଥା ଲଇଁ, ମାନିନୀ ନା ହବେ ଯାଇ, ତୁହାଁଭ୍ରବେ ବୁହୁଁ ହବେ ଭୋର ହେ । ମୋହନ । ଜୟ ଲଲିତେ ବିଶାଖେ, ଶଦେ ଚମ୍ପକଲତକେ, ଜୟ ଇନ୍ଦୁରେଖେ ତୁଙ୍ଗବଦ୍ୟେ । ରଙ୍ଗଦେବୀ ସୁଦେବୀକେ, ସହର୍ଷ ହୟ ଇସ୍ତୁକେ, ଦଅ ପ୍ରେମଧନ ନୀରବଦ୍ୟେ ଗୋ । ସଙ୍ଗିନି । ଜୟ ଶ୍ରୀ ରୂପମଞ୍ଜରି, ଜୟ ଶ୍ରୀ ରତିମଞ୍ଜରି, କସ୍ତୁରିକେ ତୁଲସିକେ ଜୟ । ଜୟ ଲବଙ୍ଗ ମଞ୍ଜରି, ରସରାଜ ସୁମଞ୍ଜରି, ବନ୍ଦ ଆମି ସବାର ପଦ ଦ୍ୱୟ ଗୋ । ସଜନି । ୫ । ଯାବେ ଏ ଜଞ୍ଜାଳ ବସ, ପାବେ ପରକୀୟା ରସ, ଅଧିଷ୍ଠାତ୍ରୀ କିଶୋରୀ ଚରନ । ଅଗୋ ଚନ୍ଦ୍ରାବଲି ଭଦ୍ରେ, ଶ୍ୟାମଲାଦ ମହାଭଦ୍ରେ କରାଅ ଉଜ୍ଜ୍ୱଲ ରସେ ସ୍ନାନ ଗୋ । ସଙ୍ଗିନି । ୬ । ପ୍ରାନସଖି ପ୍ରିୟସଖି, ଅଗୋ ପ୍ରାନ ପ୍ରିୟସଖି, ପ୍ରିୟ ମର୍ମସଖି ରୂପସଖି । ଅଗୋ ଯତ ପରିଚାରି, ମଞ୍ଜରି, ରୂପମଞ୍ଜରି, ପ୍ରେମାମୃତ ଦୟା କର ବୃଷ୍ଟି ଗୋ । ସଙ୍ଗିନି । ୭ । କିଶୋର ପ୍ରିୟାଦି ବାଧା, ନିତ୍ୟ ସିଦ୍ଧା, ସାଧନ ସିଧା, ଶତକୋଟି ଗୃହ ବାଲିସିତେ । ସବାର ପଦ ବନ୍ଦନ କରି, ଶ୍ରୀଚନ୍ଦନ ମଗ୍ନ ଭରି, ବସନ୍ତ ଉତ୍ସବ ଉଲ୍ଲାସିତେ ଗୋ । ସଜନି । ୮ ।

ଉହ୍ୱା ।

ଶୁନ ଅଗୋ ସଖି ଭକ୍ତଗନା । ହୟାଁ ପ୍ରେମାନନ୍ଦେ ଉନମନା । ୧ ।
ବାସନ୍ତିକ ରସ ମହୋତ୍ସବେ । ରାଧା ମାନେ ଗୋପି ତ୍ୟାଗ ହବେ । ୨ ।
କିଷ୍ଣ ଦିବ୍ୟୋନ୍ମାଦେ ମହାଭାବେ । ଯେ ଅଷ୍ଟ ନାୟିକା ବଇଭବେ । ୩ ।
କିଶୋରୀ ଚନ୍ଦ୍ରମା ଅନୁରାଗି । କଥାକହେ ଗୁରୁମାନ ତ୍ୟାଗି । ୪ ।
କାନ୍ତେ କାମଧେନୁ ଅନୁମତେ । ପ୍ରୋଷିତ ସ୍ୱାଧୀନଭର୍ତ୍ତୃକାତେ । ୫ ।
ପୁର୍ଣ୍ଣ ରାସୋ କୃଷ୍ଣ ଗୋପିଗନ । ଅନନ୍ଦିତ ନବ ବୃନ୍ଦାବନ । ୬ ।
ଯମୁନାପୁଲିନ କୁଞ୍ଜବନ । ଶୁକ ସାରି ବନମୟୁ ସ୍ୱନ । ୭ ।
ଜୟଦେବ ଜୟ ଜୟ ଯୁକ୍ତେ । ଶୁନ ଅନୁରାଗି ଭକ୍ତବ୍ୟକ୍ତେ । ୮ ।
ଶ୍ରୀ ରୂପମଞ୍ଜରି ଯାର ଜାତ । ତାର ହବେ ଏଇ ରସେ ଭକ୍ତ । ୯ ।
ଲଲିତା ଅମାର କିପାମୟି । ଶ୍ୟାମଲ ଯୁଥେ ଈଶ୍ୱରି ହୋଇ । ୧୦ ।
ଶ୍ରୀ ରୂପମଞ୍ଜରୀ ପକ୍ଷପାତେ । ଶ୍ରୀରାଧା କିଶୋର ଇଚ୍ଛା ହେତେ । ୧୧ ।
ବୃନ୍ଦାରାଣୀ ଅନୁଗ୍ରହ କୈଲ । ସ୍ୱପ୍ନେ ପ୍ରେମାବତୀ ଆଜ୍ଞାଦିଲ । ୧୨ ।
ପ୍ରେମଜ୍ଞାନୀ ଚକ୍ଷୁବୃନେ ଅନ୍ଧ । ଶ୍ରୀଚନ୍ଦନ କୈଲ ଗୀତବନ୍ଧ । ୧୩ ।

ପୟାର ।

ରସିକଶେଖର କୃଷ୍ଣ ପରମ କରୁଣ । ଏଇ ଦୁଇ ରସେ ହୃଷ୍ଟ ଶ୍ରୀକୃଷ୍ଣ ଚୈତନ୍ୟ ହେ । ୧ । ଏମନ ଦୟାଲ ଗୋରା ପତିତପାବନ । ଦୀନ ଅକିଞ୍ଚନେ ଯାଚି ଦେଲ ପ୍ରେମଧନ ହେ । ୨ । ପରୋକ୍ଷେ ଶ୍ରୀମୁଖେ ଆଜ୍ଞା ବହିଛେ ଆପନ । କି ବର୍ଣ୍ଣିଛେ ଭଲମନ୍ଦ କିଛୁ ନାହିଁ ଜାନି ହେ । ୩ । ସାଧୁ ବୃନ୍ଦ ପଦେ କର ଏହି ନିବେଦନ । ଯତ ଅଛେ ତର୍କ ବହୁ ଶାସ୍ତ୍ରବାଦ ଜନ ହେ ।୪ । ତାରା କର୍ଣ୍ଣଗତ କଭୁ ନା ହବେ କେବଳ । ଶୁନିତେ ଅନ୍ତର ଜଲେ ଅରସିକବର ହେ । ୫ । ବୋଲେ ଶ୍ରୀଚନ୍ଦନ ସବେ ବୋଲ ହରି ହରି । ଯୁଗଲ ମଧୁରରସେ ଯାବେ ବଲିହାରି । ୬ ।

ଶ୍ଳୋକଃ ।

ଶୃଙ୍ଗାର ରସ ସର୍ବସ୍ୱ ଶିଖିପୁଚ୍ଛ ବିଭୂଷଣଂ ।
ଅଙ୍ଗୀକୃତ ନଟାକାରମାଶ୍ରୟେ ଜଗଦାଶ୍ରୟଂ ।୨୧୩।

ଯଥାରାଗ ।

ଜୟ ଜୟ ରାଧେ, ଜଗତ ଅଶ୍ରୟ, ଜଗତ ସ୍ୱରୂପେ ବନ୍ଦିତା ।
ତଦା ଶ୍ରୟେ କିଷ୍ଣ, ନିଖିଳ ନର୍ତ୍ତକୀ, ହୃଦ ପ୍ରେମୋନ୍ମାଦେ ବନ୍ଦିତା ।
ଜୟ ଜୟ ଶ୍ରୀରାଧିକେ, ବୃଷଭାନୁସୁତା ଗାନ୍ଧର୍ବିକେ ଗୋ । ୧ ।
ଜୟ ଜୟ ରାଧେ, ଶୃଙ୍ଗାରା ସୁରସ, ସର୍ବଦା ଶ୍ରୀକୃଷ୍ଣ ଦାଇନି ।
ଚନ୍ଦ୍ରକ ଚନ୍ଦ୍ରକ, ମଣ୍ଡନ ସୁସ୍ନେହ, ଚନ୍ଦ୍ରକ ମସ୍ତକସ୍ଥାପିନି ।
ଜୟ ଜୟ ଶ୍ରୀରାଧିକେ, ବୃଷଭାନୁସୁତା ଗାନ୍ଧର୍ବିକେ ଗୋ । ୨ ।
ଅଙ୍ଗୀକୃତ ଭରେ, ପ୍ରେମେର ନିର୍ଭରେ, ଲମ୍ପଟ ନାଗର ଭୂଷିତ ।
ଶତକୋଟି ଗୋପୀ ତଦାଂଶ ମଧ୍ୟପ, ପ୍ରକଟ ବିଳାସ ସମ୍ପଉ ।
ଜୟ ଜୟ ଶ୍ରୀରାଧିକେ, ବୃଷଭାନୁ ସୁତା ଗାନ୍ଧର୍ବିକେ ଗୋ । ୩ ।
ଜୟ ଜୟ ରାଧେ ଜଳଦ ସୁନ୍ଦର, ଦିବ୍ୟ ବକ୍ଷସ୍ଥଳେ ମଣ୍ଡିତେ ।
ଦୀନ ହୀନ ଶିର-ଚନ୍ଦନ ନିତାପ, ହରତୁ ଦୁର୍ଗତି ତାହିତେ ।
ଜୟ ଜୟ ଶ୍ରୀରାଧିକେ, ବୃଷଭାନୁସୁତା ଗାନ୍ଧର୍ବିକେ ଗୋ । ୪ ।

ଶ୍ଳୋକଃ ।

ପଦ୍ମାପୟୋଧରତଟୀ ପରିରମ୍ଭଲଗ୍ନ ।
କାଶ୍ମୀରମୁଦ୍ରିତମୁରୋ ମଧୁସୂଦନସ୍ୟ ॥
ବ୍ୟକ୍ତାନ—ରାଗମିବ ଖେଳ ଦନଙ୍ଗ ଖେଦ ।
ସ୍ୱେଦାମ୍ବୁପୁର ମନୁପୁରୟତୁ ପ୍ରିୟଂ ବଃ । ୨୨ ।

ପୟାର ।

ପଦ୍ମବାସୀ ପଦ୍ମମୟୀ ପଦ୍ମ ଶ୍ରୀ ନିତମ୍ବିନୀ । ଅବିକଳ କଳଧୌତ ଗୋରଚନା ଗୋର ଗୋ ॥ ୧ ॥ କଟିକେଶରୀ ନୃପମ ତୁଙ୍ଗ ପୟୋଧର ତଟ । ଭୁଜଙ୍ଗ ଶ୍ରୀଫଳଦ୍ୱୟ ସମ୍ୟକ ସଂଘଟ ଗୋ ।୨। କି କ୍ଷେତ୍ରର କରସାରେନ ସ୍ୱର୍ଣ୍ଣ ବେଲଫଲ, ନବୀନ କୁଙ୍କୁମପଙ୍କେ ସମଳ ପଙ୍କିଲ ଗୋ ।୩। ଛାୟେ ତଟ ଲଗ୍ନ ମଗ୍ନ ପରିରମ୍ଭକରେ, ସେଇ କି ସ୍ତମ୍ଭ ହୃଦ ସର୍ପା କାଶ୍ମୀରିଗଉର ଗୋ ।୪। ମଧୁରରସ ମଧୁର ଆସ୍ୱାଦନ କରେ; ମଧୁସୂଦନେର ଷଡେ ଶ୍ରୀକୃଷ୍ଣ ଭ୍ରମର ଗୋ ।୫। କାଂଞ୍ଚି ଅନୁରାଗ ନୀଳ ଖେଳଥିବେ ପ୍ରମତ୍ତ । ଅନଙ୍ଗେର ପ୍ରାନ୍ତେ ଅଙ୍ଗେ ସ୍ୱେଦବିନ୍ଦୁ ଜାତ ଗୋ ।୬। ଯେନ ନୀଳପଦ୍ମପାତେ ବିନ୍ଦୁ ବିନ୍ଦୁ ଜଲ, ତମାଲଦଳେ କି ଫଲେ କ୍ଷୁଦ୍ର ମୋତିଫଲ ଗୋ ।୭। ସେହି ତନୁ ଶ୍ରୁତି ହବେ କବେ ଏ ନୟନେ, ବୋଲେ ଶ୍ରୀ ଚନ୍ଦନ ଦଗ ଦାସୀ ଭକ୍ତଗଣେ ।

ପୟାର ।

ଶ୍ରୀନାରଦ ପାଦତଳେ କରି ନିବେଦନ, ଭାବେ ଗଦଗଦ ହୟେ । କୁବେର ନନ୍ଦନ ହେ ।୧। ଓହେ ମୁନିବର ତୁମି ପ୍ରେମେର ବାଦଲ, ଶ୍ରୀରାଧା ଶ୍ରୀକୃଷ୍ଣ ଲୀଳାମୃତ ବୃଷ୍ଟି କୈଲ ହେ ।୨। ମନେତେ ପ୍ରବଳ ତାପ ହୈଲ ପରାଜୟ, ଅବେ ଯେଇ ପୁଣ୍ଡ ଅଜ୍ଞା ହବେ ମହାଶ୍ରୟ ହେ ।୩। ବାତ୍ସଲ୍ୟାଦି ପୂର୍ବଭାଗ କିଲ ବର୍ଣ୍ଣନ, ଚନ୍ଦ୍ରାବଳୀ ଶ୍ରୀମତୀର ହଇଲ ମିଲନ ହେ ।୪। ଲଳିତା ସେବ୍ୟାଦି ସଖି ସକଳି ମଞ୍ଜରୀ, ଭଦ୍ରା ଶ୍ୟାମଳାର ଆର ଯତ ଯୂଥେଶ୍ୱରୀ ହେ ।୫। ସପକ୍ଷ ବିପକ୍ଷ ଆର ସୁହୃଦ ତଟସ୍ଥ । ନିଜ ନିଜ ଗୁଣ ଗର୍ବେ ଗାମ୍ଭୀର୍ଯ୍ୟ ଲୁଟସ୍ଥ ହେ ।୬। କେମନି ସମାନ ପ୍ରେମେ ଦଶା କୃଷ୍ଣଦଲ, ଶ୍ରୀବୃନ୍ଦାବନେ ବସନ୍ତ ରାସ ଆରମ୍ଭିଲା ହେ ।୭। ଚମତ୍କୃତ କିଶୋରୀ ଲୀଳା ପୂର୍ଣ୍ଣବ୍ରହ୍ମ କୃଷ୍ଣ, ପ୍ରେମ ଭକ୍ତି ଉପାସନେ ତୁମି ସଦା ତୃପ୍ତ ହେ ।୮। ତୋମାର କି ପାତେ ଆମି ହଇଛେ ପାବନ, ଦରଶନ କୈଲ ବ୍ରଜେ ବ୍ରଜେନ୍ଦ୍ରନନ୍ଦନ ହେ ।୯। ଅମିତ କ୍ଷୁଧାର୍ତ୍ତି ଜନ, କିଛୁନାହିଁ ଜାନି, ଖାଓୟାବେ ତୁମି ତାରେ ଲୀଳାମୃତ ଗ୍ଲାନି ହେ ।୧୦। ଓହେ ଧନପତି ସୁତ ତୁମି ଭାଗ୍ୟବାନ୍ । ତୁମାର ପ୍ରସଙ୍ଗେ ଉଦେ ଲୀଳାମୟ ଜ୍ଞାନ ହେ ।୧୧। ଯାର ଲୀଳା ଶେଷ ମୁଖେ ଲେଶ ଶେଷ ନୟ, ତାର ଲୀଳା ବର୍ଣ୍ଣିବାର କାରଶକ୍ତି ହଏ ହେ ।୧୨। ହେ ନଳ କୁବେର ମୁନିଗ୍ରିବ ଦ୍ୱୟ ଶୁନ; ଅତି ଗୁଢ଼ ଅଟେ ଗୀତଗୋବିନ୍ଦ ବ୍ୟାଖ୍ୟାନ ହେ ।୧୩। କତ କାବ୍ୟ କତ ଶାସ୍ତ୍ର କତ ଅଲଙ୍କାର, କତଜତ ନାଟକାଦି ଅଛେ ଏ ସଂସାର ହେ । ଆବର ପୁରାନ କତ ଅଛେ ନାହିଁ ଅନ୍ତ, ତାର ମଧ୍ୟେ ସାର ଗୀତଗୋବିନ୍ଦ ଚରିତ ହେ ।୧୫। ମହାକାବ୍ୟ ସ୍ୱରୂପ ଏ ଗୀତଗୋବିନ୍ଦ, ଇହାର ଶ୍ରବଣେ ମିଲେ ପ୍ରେମ ଭକ୍ତି କନ୍ଦ ହେ ।୧୬। ଏକମନ ହୟେ । ଏବେ ଶୁନ ଧନ୍ୟଜନ, ଆମି କି କହିବ

କିନ୍ତୁ ମାଳାର ବର୍ଣ୍ଣନ ହେ ।୧୭। ତଥାପି ତାହାର କି ପାବଲେ ଯେଉ ଜାନି, ଅର ପିତା ମୁଖୁ ଅମି ଯତ ଅଛେ ଶୁନି ହେ ୧୮ । ବୃନ୍ଦାର କି ପାତେ ଯେଉ ଶୁନି ଅଛେ ଜାନା, ତା ଏବଲି ଶ୍ରଦ୍ଧାମୟ ହସ୍ତ ଦ୍ୱୟକନା ହେ ।୧୯। ତୁମାକେ କହବ ଅମି ସୂକ ଅନୁସାରେ, ବସନ୍ତ ବିହାର କି କ୍ଷେତ୍ର କହବୀ ତୁମାରେ ହେ ।୨୦। ଯାମଲା ଅର୍ଜ୍ଜୁନ ରୁପେ ତୁମି ଗୋପେ ଥିଲ୍ଯ, କିନ୍ତୁ ତୁମାରେ କତକାଲ ଦୁଃଖୀଦଣ୍ଡା ଫଲ ହେ ।୨୧। ତାର ପଦ୍ମପାଦେ ଭୃଙ୍ଗବତ୍ ରାଖି ଚିତ୍ତ; ଶ୍ରୁତ ମୁଖେ ପାନକର ସେ ରସାମୃତ ହେ ।୨୨। ଚଞ୍ଚଲ ଚିତ୍ତ ଅସ୍ଥିର କରହ ଶ୍ରବନ; ଅଇଲ ବସନ୍ତ ରାଜ ନବ ବୃନ୍ଦାବନ ହେ ।୨୩। ବୋଲେ ଶ୍ରୀଚନ୍ଦନ ଏବେ ସର୍ବେ ହରିବଲ, ଯୁଗଲ ମଧୁର ରସେ ହଇଯା ବାଉଲ ହେ ।୨୪।

ପୟାର ।

ଶୁନ ଗୋ ପ୍ରାଣସଙ୍ଗିନୀ ସଖି ଭକ୍ତଗନ, ଶ୍ରୀ ଗୀତଗୋବିନ୍ଦ ସୂକ୍ତ ମୂଳ ବର୍ଣ୍ଣନ ଗୋ । ୧ । କାଷ୍ଠମୁଖେ ଯେମନି ଅକ୍ଷର ଅଚମ୍ବିତ; ତେମନି ନା ଜାନି ଅମି କି ହବେ ଲିଖିତ ଗୋ । ୨ । ଓହେ ନିତ୍ୟ ଲୀଳ ଜନା ଦିବେ ପଦଧୂଲା; କି ତାପ ମଗନେ ଶିରୀଚନ୍ଦନ ବାଉଲା ଗୋ । ୩ ।

ଦୁହା ।

ଶୁନ ଓହେ ସଖି ଭକ୍ତଗନ, ବସନ୍ତ ରାସ ଲୀଳା ବର୍ଣ୍ଣନ । ୧ ।
ଏ ଲୀଳା ବର୍ଣ୍ଣନେ ହରେ ଦୁଃଖ, ଅଚରେ ଛୁଟଇ ଭବ ଶୋକ । ୨ ।

## ପ୍ରଥମ ଛାନ୍ଦ

ପୟାର ।

ଅଇଲେ ବସନ୍ତ ରାଜ ଶ୍ରୀବୃନ୍ଦା କାନନ, ମଳୟ ପବନ ବହେ ଅମୋଦ ବର୍ଦ୍ଧନ ହେ । ୧ । ବୃକ୍ଷଲତା ପଲ୍ଲବିତ ଶୋଭା ପ୍ରକାଶିଲ; ବନ ଭୂତ ଭ୍ରାନ୍ତ ବୁଦ୍ଧି ହୋଇଲ ପରିମଳ ହେ । ୨ । ସୁରଙ୍ଗ ପଲ୍ଲବ ଶୋଭା ସବ ଦ୍ରୁମ ପରେ, କି ଅବା ସିନ୍ଦୂର ବୃଷ୍ଟି ଦ୍ୱାଦଶ ବନରେ ହେ । ୩ । ଜାତ ଯୂଥି ପ୍ରଫୁଲ୍ଲିତ ମଲ୍ଲି ବିକସିତ; ମାଲତୀ ମାଧବୀ ଫୁଟି ଗନ୍ଧ ପ୍ରସାରିତ ହେ । ୪ । ସୁନାର ସୁ-ନାଗ ପତ୍ର ପ୍ରଭା ପ୍ରକାଶିଲା; ପାଟଳୀ ବୃକ୍ଷେର ରଙ୍ଗ ଶାଢ଼ୀ କେ ବାନ୍ଧିଲା ହେ । ୫ । ଅଶୋକ ଅ-ଶୋକ କରେ ନାଗରୀ ନାଗର, ଚୂତ ବକୁଳ ସକୁଳ ଭ୍ରମର ଝଙ୍କାର ହେ । ୬ । ନବମାଲ୍ଲିକା ମାଲତୀ ଅଳିକା ଦେଖନ୍ତ; ମାନିନୀର ମାନହନ୍ତ କେତ୍ୟାକ ପ୍ରକାଶନ୍ତ ହେ । ୭ । ବଞ୍ଜୁଳ ମଞ୍ଜୁଳ ତନୁ ବାସ ପ୍ରକଟିତ. ଅରବିନ୍ଦେ ଶୋଭେ ଦେଖ ଭୃଙ୍ଗେର ଝଂକୃତ ହେ । ୮ । ନିଲୋତ୍ପଲ ଅଚଳନ ଦୀପ୍ତି ପ୍ରକଟିଲା, ଅନଙ୍ଗ ଅନଳ ପରିକାଶ ଦର୍ଶିଲା ହେ । ୯ । ଅର୍ଦ୍ଧଚନ୍ଦ୍ର ପଞ୍ଚ

ବନ୍ଧ ଭଙ୍ଗିମା ରଞ୍ଜିତ, ବନସ୍ପତି ଯୁବତିରେ କିବା ନଖ କ୍ଷତ ହେ । ୧୦ । ଛାମ କ୍ରୀଡ଼ା ଛଳେ ତ ବସନ୍ତ ବହିଗଲା; ବିରହିଣୀ ମାନସରେ ବଜ୍ରପାତ ହୋଇଲା ହେ ।୧୧। ସର୍ବ ଲତା ପୁଷ୍ପବନ୍ତ ଦେଖି ମଧୁକର, ଭ୍ରମନ୍ତେ ଭ୍ରମନ୍ତେ ବସି ହୋଇଲ ବିଭୋର । ୧୨ । କିବା ଋତୁରାଜ ଅଗ୍ରେ ଭେରି ବାଦନ କରେ, ବିକାଶ କିଂଶ କୁସୁମ ଶୃଙ୍ଗର ପ୍ରସରେ ହେ । ୧୩ । ନାଗେଶ୍ୱର ପ୍ରଫୁଲ୍ଲିତ ଛବି ସୂବ ପତ୍ର, ମଧୁ- ଲିଟ ସ୍ୱନ କଏ ବାଦନ ନାଗର୍ ହେ । ୧୪ । କୋକିଲ ମଧୁର ଗାନ ଏ ବାର ଛାଡ଼ିଲ, ଝଙ୍କାର ଝଙ୍କାର ରବ ଦଏ ହୁଲହୁଲ ହେ । ୧୫ । ସର୍ବ ପକ୍ଷୀବୃନ୍ଦ ବାଜ ଘଣ୍ଟକ ଏ ବାର, କୁନ କୁନ ଲତା ବୀରବେଶେ ପରଶୁର ହେ । ୧୬ । ସୁନାସୀ ତ ନଲି ଧରି ଭ୍ରମନ୍ତେ ବାହାର, ନାଗେଶ୍ୱର କଲ କିବା ଗୁଲି ଯୋଖା ଅର ହେ । ୧୭ । ଭଢ଼ ପତ୍ରାଙ୍ଗ ରଞ୍ଜନ ବନ ପ୍ରପୂରିତ, ବିରହିଣୀଗଣ ମାନଙ୍କେ ନା ରହେ ଜୀବିତ ହେ । ୧୮ । ଋତୁରାଜ ପ୍ରଶ୍ରୀ ଦେଖି ଶବ୍ଦେ ହରଷିତ, ଦ୍ୱିଜରାଜ ବନଭୂମି ମାନଙ୍କେ ସୁବିଦିତ ହେ । ୧୯ । ଯମୁନାର ବାଲି ଧଣେ ତେଜେ ଝଲମଲ; ଝାଲିଧରେ ପଶି ସୁରଭିତ ମଲୟ ପ୍ରବଲ ହେ । ୨୦ । ପୁଷ୍ପବନେ ପ୍ରବେଶିଅଁ ଗନ୍ଧ ହରିନେଲ, ଉପବନ ବୃକ୍ଷେ ବାଜ ମନ୍ଦ ମନ୍ଦ ହୋଇଲା ହେ । ୨୧ । ମିତ୍ରର ସୁଜନ୍ତୁ ଦେଖି କନ୍ଦର୍ପରାଜନ, ଅନଙ୍ଗତେ ଅସି ପରବେଶ ମଧୁବନ ହେ । ୨୨ । ବ୍ରଜା- ଙ୍ଗନାଭୂରୁ ଅଦ ଧନୁ ଅକର୍ଷିଲ, ଭୃଗୁପତିଗୁନ ତଥି ଶୀଘ୍ରେ ଚଢ଼ାଇଲ ହେ । ଅରବିନ୍ଦ ଅଶୋକାଦ ଚ୍ୟୂତ ନୀଲୋତ୍ପଲ, ନବମାଳିକାଦ ପଞ୍ଚଶର ଯୋଖନ୍ ହୋଇଲ ହେ । ୨୪ । ଘନ ଘନ ଶବ୍ଦେ ଧାନ ବିରହି ମାଇନେ, ମଦନ ଦୁନ୍ଦୁଭି ହୋଇଲ ନବ ବୃନ୍ଦାବନେ ହେ । ୨୫ ।

ଦୁହା ।

ନାନା ପୁଷ୍ପ ବିକଶିଲ । ବହୁ ଅମୋଦିତ ହୋଇଲ । ୧ ।
ନାନା ପକ୍ଷୀ କୋଲାହଲ । ଶୁଭେ ଘଣ୍ଟକ ଏ ଡାର । ୨ ।
ବିରହିଣୀଗନମାନେ । ଜନ୍ମତ ହୋଇଲ ମଦନେ । ୩ ।
ରାସ କେଳ ଭାବ ମନ । ବୋଲେ ସଖି ଶ୍ରୀଚନ୍ଦନ । ୪ ।

ଚୋଖ ।

ବ୍ରଜ ମଣ୍ଡଳରେ, ନାଗରୀ ମନରେ, ପଣ୍ଡଲ ଛାମେର ଡ୍ରବ ହେ ।
କେଲ ସୁରସରେ, ନାଗରୀ ସଙ୍ଗରେ, ଜେମନ୍ତ ହବେ ବିଗୃହ ହେ ।
ସବେ ବିରହେ ଅକୁଲ; ପ୍ରେମକଲ୍ପକ ହୋଇଲ ମଞ୍ଜୁଅଳ ହେ । ୧ ।
ନବାଙ୍ଗନା ଯୁଥ, ଧନ୍ୟା [illegible], [illegible] ବିଜେ ବାର ହେ ।
ଗଉରୀ ପୂଜନେ, ଭାବ ମନେ ମନେ, ନନ୍ଦନନ୍ଦନକେ ହେଉ ହେ ।

ସ୍ତୁତି ଭବାନୀ ଅଗ୍ରରେ, ବର ଦାଅ ଏ ନନ୍ଦ କୁମରେ ଗୋ । ୨ ।
ଏମନି ଅକୁଳ, କଢଦୂର ଗେଲ, ଯୋଗମାୟା ଦୟା କୈଲ ହେ ।
ବ୍ରତ ପୂଜା ସାରି, ସେ ସବ ନାଗରୀ, ବେଶ ଭୂଷଣ ହଇଲ ହେ ।
ଫେରେ ବୃନ୍ଦାବନ ମାଝେ, ଦେଖେ କାନନ ଶୋଭା ବିରାଜେ ହେ । ୩ ।
ଯମୁନା ତଟରେ, କାନ୍ତ ଧିକଟରେ, କୁସୁମ ପ୍ରଫୁଲ୍ଲ ଅତି ହେ ।
ମିଳି ଭୃଙ୍ଗ କୁଳ; ନିସ୍ୱନ ସଙ୍କୁଳ; ଚମ୍ପେ ଫୁଲ ଫୁଲେ ମାତି ହେ । ୪ ।
ବହେ ମଳୟ ମରୁତ, ପିକ କୁହୁଃ ରବରେ ପୂରିତ ହେ ।

ଝୋଲ ।

ନବ ବସନ୍ତ ସମୟ । ନବ ବୃନ୍ଦାବନ ରସମୟ ହେ । ଘୋଷା ।
ମଳୟ ଅଚଳ, ସମୀର ପ୍ରବଳ; ଦକ୍ଷିଣ ପବନ ବହିଲ ।
ତରୁ ଲତା ସବ, ନୂତନ ପଲ୍ଲବ; ରସାଲ ମୁକୁଳ ଧରିଲ । ୧ ।
ନବ ମାଧବିକା, ମଧୁପ ଜୀବିକା ମଲ୍ଲି ବଲ୍ଲି ଫୁଟିଲ ।
ନିଅଲ କମଲ, ନିଲ ଉତପଲ, ଗନ୍ଧ ଗନ୍ଧବହ ଧରିଲ । ୨ ।
ସକଲ ପଲାସ, ନାସିଅ ପଲାସ; କୁସୁମେ ଉଲ୍ଲାସ ହଇଲ ।
ନିକୁଞ୍ଜ ଭବନେ; ରମ୍ୟ ଚ୍ୟୁତବନେ; କୋକିଲ ପଞ୍ଚମ ଗାଇଲ । ୩ ।
କୋକିଲ ସମୀରେ, ମୃଦୁ କମ୍ପନରେ, ଲଳିତ ଲବଙ୍ଗ ଲତିକା ।
କାନ୍ତେର ତକ୍ଷନେ, କରଜେ ଯେମନ, ରମନି ମୃଦୁଲ ସିଥିକା । ୪ ।
ମତ୍ତ ମଧୁକର, କରଅି ଝଙ୍କାର, ଅଶୋକ ପ୍ରଫୁଲ୍ଲେ ଘେରିଲ ।
ବୋଲେ ଶ୍ରୀଚନ୍ଦନ, ନନ୍ଦେର ନନ୍ଦନ, ଏହେନ ସମୟେ ହେରିଲ । ୫ ।

ଦୀର୍ଘଛନ୍ଦ ।

ଏ ହେନ ସମୟ ହେରି, ଶ୍ରୀ ବିଶାଖା ସହଚରୀ, କିଶୋରୀ ଚରନେ ଜଣା-ଇଲ । ଶୁଣି ବିନୋଦିନୀ ଧନି, ବସନ୍ତ ମଦନ ଘେନି, ନବ ବୃନ୍ଦାବନେ ପ୍ରବେଶିଲ ଗୋ । ଧନି ଗୋ । ନା ହବେ ମୋହନେ ଅଭିମାନୀ ଗୋ । ୧ । ଦ୍ୱିଜରାଜ ଋତୁ-ରାଜ; ସହାୟରେ କାମରାଜ; ଚକ୍ରବର୍ତ୍ତୀ ହୈଲ ବୃନ୍ଦାବନେ । କୋକିଲ ଡାକଅି ଡାକେ; ପଥିକ ନିକର ଶଙ୍କେ; ନବ ବିରହିନି ହୃଦ ହାନେ ଗୋ । ଧନି ଗୋ । ନା ହବେ ମୋହନେ ଅଭିମାନୀ ଗୋ । ୨ । ନବକିଶଲୟ କୁଲ; ସୁରଙ୍ଗ ପତକା ତୂଲ; ଅକୁଲ କରିଲ ବିଯୋଗିନୀ । ଶୁକ ଯୁବତୀ ରତି; ମତ୍ତ ଭତାର କୁଳତ; ସକଲ ପାଦାନ୍ତ ମୁଖ ଧ୍ୱନୀ ଗୋ । ଧନି ଗୋ । ନା ହବେ ମୋହନେ ଅଭିମାନୀ ଗୋ । ୩ । କବରି ଫୁଲଧନୁ ଲୟା ଭ୍ରମରେର ଗୁନ ଦଅି; ଝଙ୍କାର ନିନାଦେ ଟଙ୍କାରିଲ । ଅଶୋକ ମୁକୁଳ ଉମଳ; ନିଅଲ ନୀଲଉତ୍ପଲ; ପଞ୍ଚବାଣ ସନ୍ଧାନୋଧ

ହେଲ ଗୋ । ଧନ୍ୟ ଗୋ । ନା ହବେ ମୋହନେ ଅଭିମାନ ଗୋ । ୪ । ମୁକୁଳ ଭ୍ରମର କୁଳ, ଉଲ୍ଲସେ ମଦଅନିଳ, ହେରସ୍ତି ବଦେଶୀ ଜନବୃନ୍ଦେ । ନାଗେଶ୍ଵର ପୁଷ୍ପଗୋନ. ପ୍ରବଳ ଧବଳି ଛନ, ପଲ୍ଲବ ପତାକା ସହ ଉଡ଼େ ଗୋ । ଧନି ଗୋ । ନା ହବେ ମୋହନେ ଅଭିମାନ ଗୋ । ୫ । ଦନ୍ତରୁ କେତକ କୁନ୍ତ, ଛୁର ଛୁରଅନାମତ, ନବମାନିକାଦ ତାର କାଛେ । ଦମ୍ଭ ସଖି ଧୈର୍ଯ୍ୟଉରେ, ତାର୍ କି କରତେ ପାରେ, ଆମାର ମୋହନରାଜ ଅଛେ ଗୋ । ଧନ୍ୟ ଗୋ । ନା ହବେଁ ମୋହନେ ଅଭିମାନି ଗୋ । ୬ ।

ଦୀର୍ଘଛନ୍ଦ ।

ସଖୀର ବଚନ ଶୁନି, ଅବେଶ ବର୍ଦ୍ଧିନ ଧନୀ; ପ୍ରାଣନାଥ ସଙ୍ଗ ଇଚ୍ଛା କେଲ । ହେନ ବେଲା ଚନ୍ଦ୍ରାବଲୀ, ପାଶେ ସେବ୍ୟାସଖି ମିଳି, ବସନ୍ତ ସୌଭାଗ୍ୟ ବବଲ ଗୋ । ସଖି ଗୋ । ଗୌର ପୂଜା ପାବ ନୀଲମନି ଗୋ । ୧ । ଭଦ୍ରା ଶ୍ୟାମା କାମା ପ୍ରେମା; ନବ ଅନୁରାଗଧାମା, ଧନ୍ୟା କନ୍ୟା ସହ ବ୍ରଜାଙ୍ଗନା । ଯତନେ ଚେତନା ଭୁଲି, ପଡ଼ନେ କୁସୁମଧୂଲି; ସକଲ୍ ହଇଲ୍ ଛନମନା ସେ । ସେ କାଲେ । ସକଲ୍ ହଇଲ ଛନମନା ଗୋ । ୨ । କିସ୍ତେର ପ୍ରିୟାଦ ବଧା, ନିତ୍ୟ ସିଧା ସାଧନ୍ ସିଧା; ଶ୍ରୁତଚର୍ଯ୍ୟ ମୁନିଚର ଯତ । ଲୟ୍ନି । ନୀଲମନି ମାଲା, ଜପନ୍ କରେ କାଲକାଲା, ବୋଲେ ଶ୍ରୀଚନ୍ଦନ ସବେ ମନ୍ତ୍ର ସେ । ସେକାଲେ । ବୋଲେ ଶ୍ରୀଚନ୍ଦନ ସବେ ମନ୍ତ୍ର ଗୋ । ୩ ।

ରାଗ ବଙ୍ଗଲାଶ୍ରୀ ।

ଜୀବେର ବାସର, ଚଇନ୍ ମାସର, ଶୁକଲ ପୂର୍ଣ୍ଣିମୀ ହଇଲ ।
ଲଇଅଁ ସୁବଲ, ସୁମଧୁମଙ୍ଗଲ, ମୋହନ କାନନେ ଅଇଲ ।
ଘନଶ୍ୟାମସୁନ୍ଦର । ଦଖେ ବୃନ୍ଦାବନ ମନୋହର ହେ । ୧ ।
ହେରେ ଫୁଲବନ, ପୁଲିନ କାନନ, ବସନ୍ତ ସୁଷମା କରଛେ ।
ଅବନୀର ମାଝେ, ବାଲୁକା ସମାଜେ, ମକରନ୍ଦ ରଜ ଝରଛେ ।
ଘନଶ୍ୟାମସୁନ୍ଦର । ଦଖେ ବୃନ୍ଦାବନ ମନୋହର ହେ । ୨ ।
ତରୁ ଲତାକୁଳ, ପଲ୍ଲବେ ମଞ୍ଜୁଲ, ଚହତେ ମଲୟ ଅନିଲ ।
ପିକ ଭୃଙ୍ଗରତ, ଶ୍ରବଣେ ପୁରତ, ମଦନେ ଉଦପ ମାନିଲ ।
ଘନଶ୍ୟାମସୁନ୍ଦର । ଦଖେ ବୃନ୍ଦାବନ ମନୋହର ହେ । ୩ ।

ଡୁହା ।

ରସିକଶେଖର ନୀଲମନି । ତବେ ମଧୁକେ ବୋଲଇ ବାନି । ୧ ।
ଦଖ ଦଖ ସଖେ ହେ ବୃନ୍ଦାବନ । ତମାଲକାନନ ଶୋଭବନ । ୨ ।

ଋତୁରାଜ ରୀତି ବାନାଯୁଛେ । ବସନ୍ତ କୋଇଲି ସାଥି ହୋଇଛେ । ୩ ।

ରାଗ ବଙ୍ଗଳାଶ୍ରୀ ।

ମହା ନିର୍ମ୍ମଳ, ଶୁଦ୍ଧ ଝଲ ମଲ, ଛୁଟର ରଜନୀ ହଇତେ ।
ବସନ୍ତ ଉତ୍ସବ, ଅମି ଅରମ୍ଭିବ, ସବ ବ୍ରଜବଧୂ ସହିତେ ।
ଘନଶ୍ୟାମଲସୁନ୍ଦର । ଦେଖେ ବୃନ୍ଦାବନ ମନୋହର ହେ । ୧ ।
ମଧୁ ବୋଲେ ଭଲ, ପ୍ରସନ୍ନ ହଇଲ, ତୁମାକେ ଅବଲ୍ଲ ଜନିବେ ।
ଖେଲ୍ଲ ଲୀଲା ରଙ୍ଗେ, କାମେର ତରଙ୍ଗେ, ଆମାର ବଚନ ମାନିବେ ।
ଘନଶ୍ୟାମଲ ସୁନ୍ଦର । ଦେଖେ ବୃନ୍ଦାବନ ମନୋହର ହେ । ୨ ।
ସଖୀ ବାନି ଶୁନି, ହାସି ନୀଲମନି, ଅପନା ମନ୍ଦରେ ପ୍ରବେଶ ।
ଶ୍ରୀଚନ୍ଦନ ବୋଲେ, ଶ୍ୟାମ ହେନକାଲେ, ସଦନେ ସୁବେଶ ଅବେଶ ।
ଘନଶ୍ୟାମଲସୁନ୍ଦର । ଦେଖେ ବୃନ୍ଦାବନ ମନୋହର ହେ । ୩ ।

ପୟାର ।

ମଦନମୋହନ କୃଷ୍ଣ ନନ୍ଦେର ଦୁଲାଲ, ଭୁବନ ମୋହିତେ ନଟବରବେଶ ହୈଲ ହେ । ୧ । ମଦନମଦେ ଘୂର୍ଣ୍ଣ ପୂର୍ଣ୍ଣ ନେତ୍ରାନ୍ତ ବଙ୍କିମା । ଚଞ୍ଚଲ ଅଞ୍ଚଲ ଛଟା ତରଙ୍ଗ ରଙ୍ଗିମା ହେ । ୨ । ଅଙ୍କ ହୀନ ପୂର୍ଣ୍ଣଚନ୍ଦ୍ର ବଦନ ପ୍ରକାଶ । ଭସ୍ମ-ହୀନ ବିମ୍ବାଧରେ ମନ୍ଦ ମନ୍ଦ ହାସ ହେ । ୩ । ଭାଲପଟେ ଖେଲ୍ଲ କରେ ଭ୍ରୂଲତା ଭୁଜଙ୍ଗି । ପତିବ୍ରତା ବ୍ରତ ବିଧ୍ୱଂସନେ ହୈଛେ ତଙ୍ଗି ହେ । ୪ । ଶିରୋପରେ ଶୋଭା ପାଏ ମୟୂରେର ପୁଚ୍ଛ । ବିଶାଖା କେତକୀ ପିଛେ ନାଗେଶ୍ୱର ଗୁଚ୍ଛ ହେ । ଭାଲେ ନାଲ ଗୁଲାଲେର ବିନ୍ଦୁଏ ଶୋଭନ । କାଲମେଘେ ଉଦେ କି ବା ହଇଲ ଅରୁନ ହେ । ନାସେ ଗଜମୋତି ନାଶେ ରମା ଉମା ଦମ୍ଭ । ଗଲେ ବନମାଲ୍ଲ ନବବାଲ୍ଲ କରେ ସ୍ତମ୍ଭ ହେ । ୭ । ଅମଲ କମଲ ପାଦେ ଧ୍ୱନିତ ନୂପୁର । ତଡ଼ିତ ସୁନ୍ଦର ଛବି ଜଡ଼ିତ ଅମ୍ବର ହେ । ୮ । ନିନ୍ଦେ ଇନ୍ଦ୍ର ନୀଲମନି ରସାନେର ଝଲ । ଅପୂର୍ବ ହସ୍ତାଛେ କରେ ମୋହନ ମୁରଲ୍ଲ ହେ । ୯ । ସଙ୍ଗିଙ୍କ ଗୋପୀ ଅବିବାହି ଧନ୍ୟା କନ୍ୟାଗନ । ନତବ୍ରତେ କାତ୍ୟାୟନୀ ହସ୍ତା ସୁପ୍ରସନ୍ନ ହେ । ୧୦ । ବର ଦସ୍ତାଁ । ଛଲେ କିଷ୍ଣ ପତି ହବେ ବୋଲ । ପ୍ରାପ୍ତିବନେ ରଙ୍ଗିଦନେ ଦୁଃଖ ସେ ସକଲ । ୧୧ । ତାର ମନବାଞ୍ଛା ଜାନି ବ୍ରଜେନ୍ଦ୍ରନନ୍ଦନ । ଗେଲ ନବ ବୃନ୍ଦାବନେ ଯମୁନାପୁଲିନ ହେ । ୧୨ । ଫୁଲ୍ଲନେ କଦମ୍ବତଲ୍ଲ ଆପନି କୈଲେ ବିଜେ । କତ ଶତକୋଟି ମନମଥ ଶୋଭା ସାଜେ ହେ । ବୋଲେ ଶ୍ରୀଚନ୍ଦନ ମନମୋହନ ଅଧରେ । ସାକାୟୁଁ । ମୋହନ ବାଁଶୀ ବାଜାଏ ସ୍ୱସ୍ୱରେ ହେ । ୪ ।

ଦୀର୍ଘଛନ୍ଦ ।

ମୋହନ ମୁରଲୀ ଧ୍ୱନି, ପାଶାନ ତରଲ ପାନି; ଭରତ ହଇଲ ବନମାଝେ । ଅଧ ମଧ ଉର୍ଦ୍ଧ୍ୱ ଖେଦ, ମରମ ସରମ ଭେଦ; ହେଲ ମୋହନ ଦୀକ୍ଷା କାଯେ ରେ । ବାଁଶୀ ବାଜଇରେ । ପୁଲିନେ କଦମ୍ବ ତରୁତଳ ରେ । ୧ । ଏହି ବେଳ ସେଇ ସବ କନ୍ୟା କଲ୍ପିତ ବୈଭବ, ଉଦାତ୍ତ ଉଦାନ ମୃଦୁ ଦ୍ୱୟ । ବସନ୍ତ ସମୟ ହେଉ, ବଣ୍ଟୁର ଖେଳିଛେ ହୋଉ; ଅଇଲ ବିପିନେ ତେଜି ଭୟ ରେ । ବାଁଶୀ ବାଜଇ ରେ । ପୁଲିନେ କଦମ୍ବତରୁ ତଳରେ । ୨ । ମାଧବୀ ଲବଙ୍ଗ କାନ୍ତ, ମଲ୍ଲିକା ଫୁଲିକା ତଥି, ପରିମଳ ବିମଳ କମଳ । ସୁଶୀଳ ସୁପ୍ରେମଶୀଳ, ସଗର୍ବ-ମାନରସିକ: ଶୋଭା ବହି ସକଳ ଅବଳରେ । ବାଁଶୀ ବାଜଇ ରେ । ପୁଲିନେ କଦମ୍ବ ତରୁ ତଳରେ । ୩ । ମଦନ ମାଦକେ ପୂରି, ବହୁଅଁ ଗୁଞ୍ଜଇ ଘୋରି, ଅବାରନେ ବନେ ବନେ ଉଡ଼ିଲେ । କିଣ୍ଟୁପାଦ ଦରଶନେ ତୃଷ୍ଣା ବାଢ଼ିଲ ମନେ, ଯନେ ଗମନ ଗୁଞ୍ଜଇ ଟେଲି ଛଲେ ରେ । ବାଁଶୀ ବାଜଇରେ । ପୁଲିନେ କଦମ୍ବ ତରୁ ତଳ ରେ । ୪ । ଏହି ବେଳ ବଂଶୀ ଧ୍ୱନି, ଶୁଣି ହର୍ଷ ଦଲ ହାନି, ନବାଙ୍ଗନା ଗନ ଲାଜ କାଜ । ବୋଲେ ଶ୍ରୀଚନ୍ଦନ ବଲେ, ଝାନ୍ୟାନିଲ ପାଦତଳେ; ରୂପ ହେଉ ଗୋପିନୀ ଅସ୍ତର୍ଥରେ । ବାଁଶୀ ବାଜଇ ରେ । ପୁଲିନେ କଦମ୍ବ ତରୁ ତଳରେ । ୫ ।

ଚୂଡ଼ା ।

ଆନନ୍ଦରେ ମିଳି କନ୍ୟାଗନ । କାନ୍ତ ପାଦପଦ୍ମ କୈଲ ଦରଶନ । ୧ ।
ମୋହନ ମଧୁର ରୂପ ହେଉ । ଦଲ ଘର ବର ଦୁର କରୁ । ୨ ।
ଯେ ମୂର୍ତ୍ତି ଲବଣ୍ୟାମୃତ ସ୍ଥାନ । ତାକେ ନେତ୍ର ମୁଖେ କୈଲ ପାନ । ୩ ।

ଚଉପଦୀ ।

ଗୃହିଁ ଶ୍ୟାମ ମୋହନ ମୂରତ ସେ । ରସବତୀ । ଘୋଷା ।
ଲାଜକୁ ଚକାଇ ପଛକୁ ସକଳେ; ଚଞ୍ଚଳଷଣିଏ ସେ କ୍ଷଣି ଚଞ୍ଚଳେ ।
ନେତ୍ର ନୀଳୋତ୍ପଳ ମାଳା ଏକାବେଳେ; ମଣ୍ଡିଲେ ତେଜି ଧରତୀ ସେ । ରସବତୀ ।
ଦୁହିଁ ଦୁହିଁ ନମ୍ର ମୁଗ୍ଧକ ହସାରେ । ମୂର୍ଚ୍ଛିଲେ କୁଳ ଶୀଳ ସ୍ୱଇଚ୍ଛାରେ ।
ଘନରସ ବାଞ୍ଛା ଗୃତକୀ ପବରେ । ହୋଇଲେ ତୃଷା ଆରତ ସେ । ରସବତୀ । ୨ ।
ସେ ବକ୍ଷ ଗୃହାଣି ନକ୍ଷ କ୍ଷ ହୋଇଲା । ନକ୍ଷପରି ଦମ୍ଭ ଚକ୍ଷୁକୁ ହାଣିଲା ।
ଯେ ଥିଲା ବିବେକ ସକଳ ଗ୍ରସିଲା । ପୀରତ କଲେ କୀରତ ସେ । ରସବତୀ । ୩ ।
ବଶୀ କରଣ ଗୁଣ ନେତ୍ର କୋଣରେ । ବସିଛି ପ୍ରଦ୍ୟୁମ୍ନ ମାଧୁର୍ଯ୍ୟ ଗୁଣରେ ।
ବସିଛୁ ଭଣ୍ଡାର ରସିକ ପଣରେ । ମୋହନ ପଢ଼ି ଚରିତ ସେ । ୪ ।

ମହା ମହୋତ୍ସବେ ଶ୍ରୀଚନ୍ଦନ ଭଙ୍ଗେ । ମହାରଜଭାଙ୍କି ମୋହନ ପାଛୁଣେ । ହୁରଙ୍ଗ ଅଧରେ ମନ୍ଦମନ୍ଦ ହାସେ । ଭଣନ୍ତି ଲେ ଶ୍ୟାମ ଭାରତୀ ସେ । ରସବନ୍ତୀ ।

ପୟାର ।

କୃଷ୍ଣ ବୋଲେ ଶୁନ ସବ ନୂତନ ବାଳିକା । ନା ଯାଏ ଭ୍ରମର ପାଶେ ସେ ନବମାଲିକା । ୧ । ଜାଣିଲ ତବେ ଭ୍ରମର କତ ଭାଗ୍ୟମାନ । ଅପନା ହଇଲ ନବମାଲିକା ମିଲନ ଗୋ । ୨ । ଚଞ୍ଚଲ ନୟନେ ଗୃଲେ ରାଖି କତରଙ୍ଗ । ଚାନ୍ଦ ଶ୍ରେଭ ପର ହାସ୍ୟ ତରଙ୍ଗ ତରଙ୍ଗ । ୩ ।

ପୟାର ।

କନ୍ୟାଗନ ବୋଲେ ଓହେ ବସନ ଶ୍ରେବ ଶୁନ । କଉଦନ ହୈଡେ ଗେଲା ମାଖନଶ୍ରେବ ଗୁନ । ଅମାର ପନ ଧନ ଲୟାଁ ବନେ ଲୁକ୍ୟାଛିଲ । ଶ୍ମନ ଗୁନନ୍ଧି ତୁମାର ଶ୍ରେଗ୍ରାଧର ଗେଲ ହେ । ଗୁହାର କରଛେ ଅମି ମଦନରାଜା କାଛେ । କି ଜାନି କି ଦଣ୍ଡ ଦବେ ତୁମି ଜାନ ପିଛେ ହେ ॥ ଡ଼ାକେ ଘନ ଘନ ମତ୍ତ ପିକ ଦୂତପର । ପାଳାସ୍ୟ ପାଳାସ୍ୟ ବନ୍ଧୁ ବୃଥାହୈବେ ଧର ହେ । ୪ । ତର ଯବେ ମହଜ୍ଜୁକେ ଅମି ସ୍ଥାନ ଦବ । ନିର୍ଭୟେ ତରକ ଚର ମାଝେ ଲୟାଁ ଯାବ ହେ । ଲୁନ ବଧୂ କହେ କେନ କରହଛଲନା । ବାହୁ ଫାସି ଲୟାଁ ବାନ୍ଧ ସକଲି ଲଲନା ଗୋ । କନ୍ୟାଗନ ବାନି ଶୁନି ଛଇଲ ନାଗର । ମନ୍ଦ ମନ୍ଦ ହାସେ ପ୍ରଭୁ ଭଙ୍ଗେ ମୃଦୁଗିର ହେ । ୬ । ହାଜାର ଜନାକେ କେବା ଘୁଡ଼ଛେ ଓପ୍ରୋଧ । ପ୍ରହାର ନେହାନ୍ତକୁନ୍ତ କେନ ରାଖିକୋଧ ହେ । ଶୁନି ପ୍ରଭୁ ବାନି ସବ ଗୋପିନୀତରଲ । ଲଜ ଭୟ ଦୁହା ନିଲ ଅନନ୍ଦେ ବଭୋଲ । ହୁଲହୁଲି ଦଅଁ ସବେ ଉଲ୍ଲାହେ ବେଢ଼ଲ । ଗୁଲାଲ ଧୂଲା ତ ପ୍ରଭୁ ଚରନେ ଚଢ଼ଲ ଗୋ । ସୁରଙ୍ଗ ହଇଲ ରଙ୍ଗ ବ୍ରଜବ ଚରନ । ସିନ୍ଦୂରେ କଇଲ ସ୍ନାନ କି ବାଲ ଅରୁନ ଗୋ । ଗାନ୍ଥିଅ ଅଶୋକବତ ଅଶୋକ ମାଲିକା । ଲମ୍ବାଇଲ କୃଷ୍ଣ କଣ୍ଠେ ସେ ନବମାଲିକା ଗୋ । ମାଲ ପାୟାଁ ଅହ୍ଲାଦ ହୟ୍ୟା ଗଲେ ପର ଢାଲା ॥ ଶୋଭା ବଲିହାର ଗୋପି ହୁଲହୁଲି ଦଲା ଗୋ ॥ ବୋଲେ ଶ୍ରୀଚନ୍ଦନ ଶ୍ୟାମଘନ ଖେଲେ ହୋର । ବଲେ ଲୟାଁ କନ୍ୟାଗନ ଜରଛୁଲ ହୋର ଗୋ ।

ଦୁହା ।

ନୀଲଜ ଗୁଲାଲ ଖେଲ କୈଲ । ନବଘନ ଲତା ନାଲ ହୈଲ । ୧ ।
ଚଜଅ ଚନ୍ଦନ ଅରଗଜା । ମାରେ ପିଚକାର ନୃତ୍ୟ ବଜା । ୨ ।
ଅନନ୍ଦେ ଗୁଲାଲ ଉଡ଼ାଓଲ । ହର ଗୋର ହୋର ବଢ଼ାଓଲ । ୩ ।

ଏକତାଳ ।

ଅଚରଣରେ ଅନ୍ଧରରେ ଅମ୍ବରଂଭଡ଼ିଲା ରେ । ଘୋଷା ।

ଲଳିତ ବସନ୍ତ ରାସ, ରସେ ରସି ପୀତବାସ, ଗୋପଗଣ ସଙ୍ଗେ ହୋଇ ଖେଳନ୍ତ ବଡ଼ିଲା ରେ । କାହା ଗଳେ ଗଳେ ମିଳି, କାହା ଉଚ କୁଚେ ବୋଳି; କେଉଁ ବାଳା ବନମାଳୀ ଶ୍ରୀଅଙ୍ଗେ କଢ଼ିଲା ରେ । କେଉଁବାଳା ଅନୁରାଗେ, ଆଳାପି ବସନ୍ତ ରାଗେ, କେ ପୁଷ୍ପକ ବଲ୍ଲକା ଝଲ୍ଲକ ଝାଡ଼ିଲା ରେ । କେଉଁ ବାଳୀ ମାରେ ତାଳି, ନାଚେ ଶ୍ୟାମ ତଳି ଉଳ୍ଲି, ହୁଳହୁଳିଂ ରାସସ୍ଥଳୀ ଉଚ୍ଛୁଳି ପଡ଼ିଲା ରେ । କେ ଗଣ୍ଡେ ଚୁମ୍ବନ ଦେଇ, ଶ୍ରୀମୁଖୁଁ ତାମ୍ବୂଳ ଖାଇ, କେ ପିଅଇ ପିଅଇ ସୁରବେକ ଏଢ଼ିଲା ରେ ॥ ଫିଙ୍ଗନ୍ତେ କାହା ନୟନେ, ସେକ୍ଷଣି ସେହୁ ଅୟନେ, ବୋଲେ ଶ୍ରୀଚନ୍ଦନ ବେନକର କେ ଅଡ଼ିଲା ରେ ।

ପୟାର ।

ଏହିମତ ଖେଲ କରେ ବ୍ରଜେନ୍ଦ୍ରନନ୍ଦନ । ବନ ତରୁଲତା ମଧ୍ୟୀ ସୁରଙ୍ଗ ବରନ ହେ । ସବ ଗୋପୀ କରମୁଠା ଏକାବେଳେ ଫିଟେ । ଗୁଲାଲ ଧୂଳିରେ ଛନ ଚନ୍ଦ୍ରଦଗେ ଉଠେ ହେ । ନଅଲ ମାଧବୀ ମଲ୍ଲି ଝରାଝ ତରର । ସବେ ଅନୁରାଗି ହୋଇଛେ ଯେମନ୍ତ ମନ୍ଦାର ହେ । ୩ ।

ପୟାର ।

ଏହିକାଳେ ଶ୍ରୀରାଧାର ସଖି ଶ୍ରୀଲଲିତେ । ବୃନ୍ଦାବନେ ପ୍ରବେଶିଲ କୁସୁମ ତୁଳିତେ ହେ । ଲୁକି ଲୁକ ନବଡ଼ ଲଡ଼ବା ମାତ୍ରେ ଥାଇ । ଗୋପୀ ଗୋପୀନାଥ ଗ୍ରେର ରାସୋତ୍ସବ ଦେଖି ହେ । କ୍ରୋଧଭରେ ଭ୍ରୂଭଙ୍ଗିମା କରଅଁ କୁଟିଳ । ବୋଲେ ଶ୍ରୀଚନ୍ଦନ ଧନୀ ପାଶେ ଚଳିଁ ଗେଲ ହେ ॥

ଉଦ୍ଧା ।

ବାଟୁରେ ଅନ୍ତରେ ସହଚରୀ । ଧନ ଗ୍ଲାଢ଼ ଅଁତମତ୍ର ହରି । ୧ ।
ଧନୀ ଆଜ୍ଞା ବଚନ ରାସୋତ୍ସବ । ଅବେ ସେଇ ହବେ ଅନୁଭବ । ୨ ।
ଭାବତେ ଭାବତେ ପଥ ଚଲେ । ଶ୍ରୀଚନ୍ଦ୍ର ଶ୍ରୀରାଧିକା ପାଶେ ମିଳେ । ୩ ।

ଶ୍ଲୋକଃ ।

ବସନ୍ତେ ବାସନ୍ତ କୁସୁମସୁକୁମାରୈରବୟବୈ ।
ଭ୍ରମନ୍ତୀ କାନ୍ତାରେ ବହୁବହିତକୃଷ୍ଣାନୁସରଣଂ ।
ଅମନ୍ଦଂ କନ୍ଦର୍ପଜ୍ୱରଜନିତଚିନ୍ତାକୁଲତୟା ।
ବ୍ଧଳବାଧାଂ ରାଧାଂ ସରସମିଦମୂଚେ ସହଚରୀ ।

ଝୋଲ ।

ଏକଦିନେ ରାଈ, ସଖୀଗଣର ସନେ, ବସନ୍ତ ଭ୍ରମନ କରେ ଗୋ ।
ପୂର୍ଣ୍ଣଚନ୍ଦ୍ରାନନେ, କୁସୁମ କାନନେ, ମାଧବୀ ଫୁଲ କେ ହେରେ ଗୋ ।
ତାରା ସଙ୍ଗରଙ୍ଗ ମଗ୍ନେ । ଫିରେ ସୁକୁମାର ଶ୍ରୀଚରନେ ଗୋ । ୧ ।
ମାଧବୀ ଫୁଲକେ, ହେରଇଲେ ଧନୀ, ମାଧବ ପଡ଼ିଲ ମନେ ଗୋ ।
କିମ୍ବେର ଚରନ, ଦରଶନ ଭରେ, ଅନୁସରେ ଫଲବନେ ଗୋ ।
ନବ କିଶୋର ରାଧିକେ, ବୃଷଭାନୁ ସୁତା ଗାନ୍ଧର୍ବିକେ ଗୋ । ୨ ।
ଚନ୍ଦ୍ରାର୍ଦ୍ଧ କଲସ, ଧ୍ୱଜ ବଜ୍ରାଙ୍କୁଶ, ଚିହ୍ନମାନ ଦେଶେ ନେନେ ଗୋ ।
ସୁରଙ୍ଗ କମଲ, ବିମଲ ଛବିରେ, ଭାବିଲେ ପୂଲକ ଗାତେ ଗୋ ।
ଜଗମୁଖୀ ନୀଲବାସ, ତାରେ ନା ହେବ ତେଜଇ ଶ୍ୱାସ ଗୋ ।
ଏହିକାଳେ ମନ୍ଦ, କନ୍ଦର୍ପେର ଚନ୍ଦ୍ରା ଶ୍ରୀଅଙ୍ଗେ ହଇଲା ଜାତ ଗୋ ।
ତବେ ଚନ୍ଦ୍ରା କୂଲେ, ସିହ୍ନାର ଅକୂଲେ; ବାଧାଭରେ ରାଧା ଯୁକ୍ତ ଗୋ ।
କର ନୀଲୋତ୍ପଲ ଫୁଲେ, ମୃଦୁ ଚୁମ୍ବନ ରଙ୍ଗେ ଶିଖିଲେ ଗୋ । ୪ ।
ହେନ କେଲି ସଖି, ଲଳିତା ଆସିଆଁ, ମିଳିଲ ରାଧାଙ୍କ ପାଶେ ଗୋ ।
ବୋଲେ ଶ୍ରୀଚନ୍ଦନ, ହରିଦେବ ନନ୍ଦନ, କଣ୍ଠଗୁନ ପରକାଶେ ଗୋ ।
ବୋଲେ ଶୁନ କୁତୁହଳ, ଗୋପୀନାଥେର ସୁରସ କେଳି ଗୋ ।

ଦୀର୍ଘଛନ୍ଦ ।

ଲଲିତ ଲବଙ୍ଗ ଲତା, ମୃଦୁ ପରଶିଲ ଲତା, କୋମଲ ମଲୟ ମନ୍ଦାନିଳେ । ମତ୍ତଭୃଙ୍ଗ ମଧୁପାନେ, ନିକୁଞ୍ଜ କୁଟିର ବନେ, କୁଜନ୍ତ ପ୍ରମତ୍ତ ପିକକୁଲେ ଗୋ । ହରି ବିହରେ, ସରସ ବସନ୍ତ କାଲେ ବନେ, ନୃତ୍ୟନ୍ତ ଯୁବତୀ ଜନେ, ଦୂରନ୍ତ ନାଗର ସନେ, ବିରହୀ ମଗନେ ସାବଧାନେ ଗୋ । ୧ । କାମମନୋରଥେ ମତ୍ତ, ପଥିକ ଯୁବତୀ ଯତ, ଜନିତ ଅକୁଲେ ଅତକ୍ଲାନ୍ତ । ଅଲିକୁଲ ମୋଦଭର, କୁସୁମ ସମୂହେ ପୂର, ସକଳି ବକୁଲ ପୁଷ୍ପବନ୍ତ ଗୋ । ହରି ବିହରେ, ସରସ ବସନ୍ତ କାଲେ ବନେ । ୨ । ନବୀନ ତମାଲ ମାଲ, ମୃଗମଦ ପରିମଲ; ବିପିନ ଯୁବତୀ ଉରସ୍ଥଳ । ନାଗର ମଦନ ନଖ, ଯତ ଅର୍ଦ୍ଧଚନ୍ଦ୍ର ରେଖ, ରଙ୍ଗରାଜେ ପଲାଶ ପ୍ରଫୁଲ୍ଲ ଗୋ । ହରି ବିହରେ, ସରସ ବସନ୍ତ କାଲେ ବନେ । ୩ । ମନ-ମଥ ମହୀପତି, କନକ ଦଣ୍ଡ ଅକୃତ, ନାଗେଶ୍ୱର କୁସୁମ ବିକାଶେ । ପାଟଳି ପଟଳେ ଅଳି, ବସିଛେ ଏମନି ଝଲି; ସ୍ମର-ଶର ଭରିତ ଆଭାଷେ ଗୋ । ହରି ବିହରେ, ସରସ ବସନ୍ତ କାଲେ ବନେ । ୪ । ତରୁନା କରୁନା ପୁଷ୍ପ, ଲଜ୍ଜା ତ୍ୟଜି କରେ ହାସ୍ୟ, ଜଗଜନେ ତାଏ ଦେଖି ଯାଏ । କେତକୀ ଦନ୍ତୁର ଶୀତ,

ମାର କୁନ୍ତ ମୁଖାକୃତି,ବିରହୀ ବଧିତେ ତୋଷ ଯାଏ ଗୋ । ହରି ବିହରେ ସରସ ବସନ୍ତ କାଳେ ବନେ । ୫ । ମାଧବୀ •ମଲ୍ଲିକା ଜାତି, ପରିମଳେ ଯତି ମତି, ମୋହନେ ମୋହନ ବୃନ୍ଦାବନେ । ତାରେ ଉଛୁଳ ବମନୀ, ସ୍ନେହେ ନୀଳ ବନ୍ଧୁମାନ ମାନବ୍ୟେର ମସ୍ତକ ସାଜେନ ଗୋ । ହରି ବିହରେ, ସରସ ବସନ୍ତ କାଳେ ବନେ । ୬ । ପଲ୍ଲବିତ ଲତା କାନ୍ତା, ପାଦପକାନ୍ତେ ଜଡ଼ିତା, ମୁକୁଲିତେ ପୁଲକିତ ଚୂତ ବୃନ୍ଦାବନ ସଉସରେ, ଯମୁନା ବହଇ ଧୀରେ, ତାକେ ସ୍ପରଶିଆଁ ଅସେ ବାତ ଗୋ । ହରି ବିହରେ ସରସ ବସନ୍ତ କାଳେ ବନେ । ୭ । ସରସ ବସନ୍ତ ଗୀତ, ବର୍ଣ୍ଣିତେ କମ୍ପଇ ଚିତ, ଯାତ ଯୂଥି ବନ୍ଧ୍ୟଂସେ ମଧୁପ । ଦୁଃଖେ ଶ୍ରୀ ଚନ୍ଦନ ବୋଲେ ତବ କାନ୍ତ ଏହିକାଳେ, ନବ ବଧୂ ରମିତେ ଅଳପ ଗୋ । ହରି ବିହରେ ସରସ ବସନ୍ତ କାଳେ ବନେ । ୮ ।

ଶ୍ଳୋକଃ ।

ଦରବିଦଳିତ ମଲ୍ଲୀ ବଲ୍ଲୀ ଚଞ୍ଚତ୍ପରାଗ
ପ୍ରକଟିତ ପଟ୍ଟବାସୈର୍ବାସୟନ୍ କାନନାନି,
ଇହ ହି ଦହତି ଚେତଃ କେତକୀ ଗନ୍ଧବନ୍ଧୁ
ପ୍ରସରଦ ସମବାଣପ୍ରାଣବଦ୍ଗନ୍ଧ ବାହଃ ।

ପଦ୍ଧାର ।

କେଲିକଦମ୍ବେର ତଳେ ନନ୍ଦେର ନନ୍ଦନ, ତ୍ରିଭଙ୍ଗି ଭଙ୍ଗିମା ହୟ୍ୟାଁ ମୁରଲୀ ବଦନ ହେ । ୧ । ବସନ୍ତେର ମହୋତ୍ସବ ହେରି ରସ ରାଜ, ମତ୍ତ ହୟ୍ୟାଁ ନୃତ୍ୟକରେ ଗୋପିନୀ ସମାଜ ଗୋ । ୨ । ଯମୁନା ପୁଳିନେ ଦର ବିଦଳିତ ମଲ୍ଲି, ପଡ଼ିଆ କୁସୁମ ଧୁଲି ଶୋଭେ ଦଶେ ବଲ୍ଲି ଗୋ । ୩ । କାନନେ ଭରତ ହୟ୍ୟାଁ ପ୍ରକଟେ ସୁବାସ, ଦହନ କରେ ନବବିରହିଣୀର ମାନସ ଗୋ । ୪ । କେତକୀର ବନ୍ଧୁ ହୟ୍ୟାଁ ମନ୍ଦବାତ ବହେ, ପ୍ରପଞ୍ଚ କୁସୁମ ବାନ ପଞ୍ଚପ୍ରାନ ଦହେ ଗୋ ।୫।

ଡ଼ୁହା ।

ଶୁନ ଶୁନ ଅଗୋ କମଳିନୀ, ଗୋପୀ ମାଝେ ନାଚେ ନୀଳମଣି । ୧ ।

ଶ୍ଳୋକଃ ।

ଉନ୍ମୀଲନମଧୁଗନ୍ଧଲୁବ୍ଧ ମଧୁପ ବ୍ୟାଧୂତ ଚୂତାଙ୍କୁର,
କ୍ରୀଡ଼େତ୍କୋକିଳ କାକଳୀ କଳକଳୈ ରୁଦ୍ଗୀର୍ଣ୍ଣ କର୍ଣ୍ଣଜ୍ୱରାଃ,
ନୀୟନ୍ତେ ପଥିକୈ କଥଂ କଥମପି ଧ୍ୟାନାବଧାନକ୍ଷଣ,
ପ୍ରାପ୍ତପ୍ରାଣସମାସମାଗମରସୋ ଲ୍ଲାସୈ ରମୀ ବାସରାଃ । ୨୫ ।

ଉନ୍ମିଳିତ ମଧୁଗନ୍ଧେ ଲୁବ୍ଧ ମଧୁକର; କମ୍ପନ କରେ ବଲ୍ଲେଭନେ ନବ ଚ୍ୟୁତାଙ୍କୁର ଗୋ । ୧ । ତାତେ ସୁକୋମଳ କଳରବେ କ୍ରୀଡ଼ା କରେ; ଶୁଣିତେ କମ୍ପଇ କର୍ଣ୍ଣ କମ୍ପଜ୍ୱର ଭରେ । ୨ । ପ୍ରବାସି ବନିତାକୁଳ ହୋଇଅଁ ଅକୁଳ; କରୁଣରୂପେ ପ୍ରାନ ମାତ୍ର ଧରଛେ କେବଲ ଗୋ । ୩ । ପ୍ରାନେର ପ୍ରୟାନକାଲ ପ୍ରାପ୍ତି ହୈଛେ ତାରେ; ଏହୁକାଲେ ଭବ କାନ୍ତ ଉଲ୍ଲାସେ ବିହରେ ଗୋ । ୪ ।

ଉହା ।

ଶୁନ ଶୁନ ସଖି କିଶୋରୀ; କିସ୍ତୁନାଚେ ଗୋପୀ ଅଛେ ଘେର । ୧ ।

ଶ୍ଲୋକଃ ।

ଅଦ୍ୟୋତ୍ତୁଙ୍ଗ ବସା ଭୁଜଙ୍ଗ କବଳ କ୍ଳେଶାଦ ବେଶା ବଲଂ,
ପ୍ରାଲେୟ ପ୍ଲବନେଚ୍ଛୟାନୁସରତି ଶ୍ରୀଖଣ୍ଡଶୈଳାନିଳଂ;
କଅସ୍ମିନ୍ ଗୁରସାଲ ମୌଳିମୁକୁଳାନ୍ୟା ଲୋକ୍ୟ ହର୍ଷୋଦୟ
ଦୁନ୍ମୀଲନ୍ତି କୁହୁଃ କୁହୁରତି କଲୋତ୍ତଳାଃ ପିକନାଗିରଃ । ୨ ।

ପୟାର ।

ଆର ଏକକଥା ଶୁନ ପ୍ରାନେର ସଜନି; ମଲୟ ପର୍ବତୁଁ ମନ୍ଦବାତ ଅଇଲ ଧ୍ୱନି ଗୋ । ୧ । ଭୁଜଙ୍ଗ ଖାବାର ଡ଼ରେ ଲୁକାୟାଁ ଲୁକାୟାଁ; ଗୋବର୍ଦ୍ଧନ ଉତ୍ତମାଙ୍ଗେ ପଡ଼ିଲ ଝୁଣ୍ଟିଆ ଗୋ । ୨ । ଶ୍ୟାମଜାୟା କ୍ଲେଶଭରେ ଯମୁନାକେ ଗେଲ, ତାରେ ମଜ୍ଜି ମନ୍ଦବାତ ଚେତନା ପାଇଲ ଗୋ । ୩ । ଲଳିତ ଲବଙ୍ଗଲତା ବେଶ ସ୍ପର୍ଶ କୈଲ; କମ୍ପିତ ଚ୍ୟୁତ ମୁକୁଳ ହରଷ ଲଭିଲ ଗୋ । ୪ । ତାତେ ମିଲି ପିକ କୁହୁ କୁହୁ ରବକରେ; କାମ କୁହୁ ଘୋଷିଅଛେ ବିପିନ ମାଝାରେ ଗୋ । ୫ । ସେହୁ ସର୍ପଖିଆ ବାତ ଅଛେ କିସ୍ତୁସଙ୍ଗେ; ତାକେଲୟାଁ ନାରୀମାନ୍ଦେ ନାଚେ ନବ ରଙ୍ଗେ ଗୋ । ୬ । ଚନ୍ଦ୍ରାନିଡ଼ାଲନି ତାଲେ ମୃଦୁଲ ପବନେ; ନାଚେ ନଟବର ସଏ ଗୋପନାରୀ ସନେ ଗୋ । ୭ ।

ପୟାର ।

ଶୁନିୟାଁ ଶ୍ରୀମତୀ ପ୍ରେମ ସିଥିଲ ହଇଲ; ମନେମନେ କ୍ରୋଧ ମୁଖେ ଆନନ୍ଦ ବାଢ଼ିଲ ଗୋ । ୧ । ବୋଲେ ଆମି ଦେଖି ଯାବ କାନ୍ତର ସାଜନି; ଗ୍ରୈରାଇ ଗୋପିନୀ ନିଛେ ଆମାର ମାଲମନି ଗୋ । ୨ । ଲତାର ଉହାଡ଼େ ଥାକ ଲୁକାଅଁ ହେରବ; କେମନି କରଇ କ୍ରୀଡ଼ା ପ୍ରାନେର ବାନ୍ଧବ ଗୋ । ୩ । ବୋଲେ ଶ୍ରୀ ଚନ୍ଦନ ଅନୁରାଗି ବିନୋଦିନୀ; ସଖି ସାଥେ ଗେଲ ଯାହାଁ ନାଚେ ନୀଲମନି ଗୋ ।

ଶ୍ଳୋକଃ

ଅନେକନାରୀପରିରମ୍ଭସଂଭ୍ରମସ୍ଫୁରନ୍ମନୋହାରିବିଳାସଲାଳସଂ ।
ମୁରାରିମାରାଦୁପଦର୍ଶୟନ୍ତ୍ୟସୌ; ସଖୀ ସମକ୍ଷଂ ପୁନରାହ ରାଧିକା ।

ଯଥାରାଗ ।

ବେନି ସଖି ସନେ, ଲତା ଉଳେ ଲୁକି, ଦେଖେ ରାଈ ଶ୍ୟାମ ବିଳାସ ।
ଅନେକ ନାଗରୀ; ପରିରମ୍ଭ କରି; ଗୋବିନ୍ଦେର ମନ ଉଲ୍ଲାସ ।
ମାର ମାଦକେ ସଂଭ୍ରମ; ହୃଦେସ୍ଫୁରେ ମନୋହାରି ପ୍ରେମ ଗୋ । ୧ ।
ପୁର୍ବେ ମୁରଦୈତ୍ୟ; ଯେଇ ନାଶିଥିଲ; ସେଇ ନାକ ଏଇ କଲିଛେ ।
ଅବେ କି ସୁନ୍ଦର; ହଇଛେ ସାକେଳ; ହେର ଟଗ ଗୋପିନୀ ସହିତେ ।
ବୋଲେ କିଶୋରୀ ରାଧିକା ! ଦେଖ କି ଶୋଭା ଏ ଗିରି ଟେକା ଗୋ ।୨।
ଚନ୍ଦନ ଚର୍ଚ୍ଚିତ; ନୀଲ କଲେବର; ପୀତ ବସନମାଲ୍ୟ ।
ଖେଳତ ଚଞ୍ଚଳ; ରତନ କୁଣ୍ଡଳ; ଗଣ୍ଡଯୁଗ ସ୍ମିତ ସାଲିଯା ।
ମଧ୍ୟାନାହିଁ ଏକ ନାରୀ ସବ ମୁଗ୍ଧାସନେ ଖେଳେ ହରି ଗୋ ।୩।
ପୀନ ପୟୋଧର; ଗୋପିନୀ ନିକର ଲିହଛେ ଶ୍ୟାମେର ହୃଦେ ଗୋ ।
ମର୍କତ କପାଟେ; କୁନ୍ଦନ ସଂପୁଟେ; ବସାଇଲ ଉନମାଦେ ଗୋ ।
କୁନ ଗୋପୀ ଅନୁରାଗେ କରେ ଆଳପ ପଞ୍ଚମ ରାଗେ ଗୋ ।୪।
ଦେଖ ଦେଖ ସଖି; କୁନ ଚନ୍ଦ୍ରମୁଖୀ; ବାଲସେ ଉଲ୍ଲାସେ ଅତି ଗୋ ।
ନୟନ ଉଲ୍ଲୋଳେ; ମଦନେ ଶିହରିଲ ସହଜେ ମୁଗୁଧା ଜାତି ଗୋ ।
ଶ୍ୟାମ ବଦନ କମଲ । ଧ୍ୟାନଧରି ମୁନିମତ ଭ୍ରେଲ ଗୋ ।୫।
କୁନ ନାରୀ ବନ୍ଧୁ କପୋଳ ତଳତେ; କୁନ ନାରୀ ଶ୍ରୁତି ମୁଲେ ଗୋ ।
ମଣ୍ଡି ଗୃହସ୍ଥ ଚୁମ୍ବ; ଖଣ୍ଡି ଅଛେ ଦମ୍ଭ; ପୁଲକେର ଅନୁକୁଲେ ଗୋ ।*
ସାକ୍ଷୀ ହୟ ବିଶାଖିକେ । ମିଥ୍ୟା ପଣ୍ଡିତେର ଅନ୍ଧୁନେକ ଗୋ ।୬।
କୁନ ରସିକନୀ; ହଇୟା ଉନ୍ମତ୍ତ ଯମୁନା ନଦୀର ତୀରେ ଗୋ ।
ଲତାକୁଞ୍ଜ ଗତେ; ବନ୍ଧୁକେ ଲଇତେ; ବାସ ଆକର୍ଷଣ କରେ ଗୋ ।
ମଞ୍ଜୁ ବଞ୍ଜୁଲ ବଲ୍ଲରୀ । କୁଞ୍ଜେ ଏକାନ୍ତେ ମଗନ ଭରି ଗୋ ।୭।
କୁନ କୁନ ନାରୀ; ଦେଇ କରତାଳି; ଝୁମୁ ଝୁମୁ ଆଭରନ ଗୋ ।
ନାଚେ ଢଳି ଢଳି; ବାଜାୟା ମୁରଲୀ; ଶ୍ୟମଲିଅ ନବଘନ ଗୋ ।
କୁନ ନାରୀ ପ୍ରଶଂସାରେ; ଦେଏ ଅଲିଙ୍ଗନପୁରସ୍କାରେ ଗୋ ।୮।
କୁନ ଗୋପୀ ସ୍ତନ; ଜଘନ ବସନ ଆକର୍ଷଣ କିନ୍ତୁ କରେ ଟଗୋ ।
ହେନ ଶୋଭା ହେରି; ମଦନ ମୋହନ; ସର୍ବାଙ୍ଗେ ପୁଲକ ପୁରେ ଗୋ ।

କୁନ ଗୋପୀ ମାରେ ତାଳ । ବଳେ ଗଲେ ଗଲେ ଯାଏ ମିଳି ଗୋ । ୯ ।
କୁନ ନିତମ୍ବିନୀ, ପୁଲକ ବହିଅଁ; କ୍ରିଷ୍ଣ ମୁଖେ ଚୁମ୍ବ ଦଏ ଗୋ ।
ମଦନ ଦର୍ପନ; ବଦନୁ କେବଳ; ଗୋପିଣୀ ତାମ୍ବୁଲ ଖାଏ ଗୋ ।
କେଳି କଦମ୍ବେର ତଳେ; କେଳି କରଇ ଯମୁନା କୁଳେ ଗୋ । ୧୦ ।
କୁନ ରସିକିଣୀ; ତାମ୍ବୁଲ ଚର୍ବନ; କରଅଁ ଦ'ଭାଗ କରେ ଗୋ ।
ଅଧକ ଖାଇଅଁ, ଅଧକ ଲଇଅଁ; ଦଏ ଶ୍ୟାମ ଶ୍ରୀମୁଖରେ ଗୋ ।
ହେନ କେଳି ବିମ୍ବାଧରେ, ଦନ୍ତ ଦଂଶନେ ସିତ୍କାର ଧରେ ଗୋ । ୧୨ ।
ବୋଲେ ଶ୍ରୀଚନ୍ଦନ, ନିଧୁବନ ଚୈର, ମାଧୁରୀ ଏମନି ସାଜେ ଗୋ ।
ଚଞ୍ଚଳ ନେତ୍ରାନ୍ତେ; ଚଲେନ ଗୋପିଣୀ, ବଖିଳ ଭୁରଜା ମାଝେ ଗୋ ।
ଗୁରୁ କୁଟିଲ ଅଲକ, ମୋତ କଲ୍ପେ ଅତି ଝଟକ ଗୋ । ୧୩ ।

ଶ୍ଳୋକଃ

ବିଶ୍ଵେଷାମନୁରଞ୍ଜନେନଜନୟନ୍ନାନନ୍ଦମିନ୍ଦୀବର ।
ଶ୍ରେଣୀ ଶ୍ୟାମଲକୋମଳୈ ରୁପନୟନଙ୍ଗୈରନଙ୍ଗୋତ୍ସବ ।
ସ୍ୱଚ୍ଛନ୍ଦଂ ବ୍ରଜସୁନ୍ଦରୀଭିରଭିତଃ ପ୍ରତ୍ୟଙ୍ଗ ମାଲିଙ୍ଗିତଃ ।
ଶୃଙ୍ଗାରଃ ସଖି ମୂର୍ତ୍ତି ମାନିବ ମଧୌ ମୁଗ୍ଧୋ ହରିଃ କ୍ରୀଡ଼ତି ।

ପୟାର ।

ଅଖିଲ ସଂସାର ଜନ ଜନିତ ଆନନ୍ଦ; ଇନ୍ଦୀବରଦଳଶ୍ରେଣୀ ଶ୍ରୀରୁପ ଗୋବିନ୍ଦ ଗୋ । ନିଜ ଅଙ୍ଗେ ଅନଙ୍ଗେର ଉତ୍ସବ କରାଇ, ସ୍ୱଚ୍ଛନ୍ଦେ ବ୍ରଜସୁନ୍ଦରୀ ନିର୍ଭରେ ରମଇ ଗୋ ॥ ମେହ ଅବବାହୀ ଧନ୍ୟା କନ୍ୟାଗନ; ନିର୍ଭରେ ପ୍ରତ୍ୟକ୍ଷେ କରେ କ୍ରିଷ୍ଣ ଅଲିଙ୍ଗନ ଗୋ ॥ ଶୃଙ୍ଗାର ରସକ ସଖି ମୂର୍ତ୍ତିବନ୍ତ ହେଇଛେ, ମୁଗ୍ଧାମନ ହରହର କ୍ରୀଡ଼ା ଆରମ୍ଭିଛେ ଗୋ । ଏମନି କହଅଁ ଧନୀ ବିପିନେ ବିହରେ, ଲକ୍ଷ ଲତା ଲୁକେ କହୁଁ ଲଭୁଁ ହେରେ ହେରେ । ଲଳିତ ବସନ୍ତ ରାସେ ରସିଛେ ମୋହନ, ଶୋଭା ବଳିହାର ରାଧେ ମୃଦୁ ଲମ୍ବମାନ ଗୋ ।

ପୟାର ।

ପ୍ରଥମ ଛନ୍ଦେର ବ୍ୟାଖ୍ୟା ହେଲ ସମାପନ, ଶ୍ରୀଗୁରୁ ଗୋବିନ୍ଦ ପାଦେ କୋଟି ପ୍ରଣମିତ । ଶିକ୍ଷା ଗୁରୁ କ୍ରିପାମୟୀ ଶ୍ରୀମତୀ କିଶୋରୀ, ମଦନମୋହନ ଅଙ୍ଗେ ନିବାସ ଯାହାର ହେ ॥ ପଦ୍ମାବତୀ କାନ୍ତ ଜୟଦେବ କବିରାଜ; ଶୃଙ୍ଗାର ବିବେକ ତତ୍ତ୍ୱ ନିରୂପନେ ଅର୍ଥ ହେ । ତାର କ୍ରିପାବଲେ ତାର ବଦନ ଉଦ୍ଗୀର୍ଣ୍ଣ, ଅଜ୍ଞାନୀ ପିଣ୍ଡିକ କରେ ଉଚ୍ଛିଷ୍ଟ ଚର୍ବନ ହେ । ଉଜ୍ଜ୍ୱଳ ରସ ଗୂଢ଼ତ ଜନା ଯେଇ ହୟ; ଏଇ ନୀଳ ବନମାଳ ଗଲତେ ପରୟ ହେ । ପିଣ୍ଡିକେର ନାମେ ମ୍ଲିଷ୍ଟ ନା ହଏ

ବର୍ଣ୍ଣିତେ, ଶ୍ରୀଚନ୍ଦନ ଶବ୍ଦେ ଦୋଷ ନା ଲଯ଼ ମହାନ୍ତେ ହେ । ଅଞ୍ଜନ ପ୍ରେମସାଯ଼ର ଏୟୋଦଶ ଛାନ୍ଦ, କାଞ୍ଚିନ କର ଓହେ ହୃଦ୍ଯ଼ କୁଳ ଙ୍କ ଜାଗାନ୍ଧି ହେ ।

ଦ୍ୱିତୀଯ଼ ଛାନ୍ଦ ।

ଶ୍ଳୋକଃ

ବିହରତି ବନେ ରାଧା ସାଧାରଣପ୍ରଣଯ଼େ ହରୌ ।
ବିଗଳିତନିଜୋତ୍କର୍ଷଦୀର୍ଷା ବଶେନ ଗତାନ୍ୟତଃ ।
କ୍ୱଚଦପି ଲତାକୁଞ୍ଜେ ଗୁଞ୍ଜନ୍ମଧୁବ୍ରତମଣ୍ଡଳୀ ।
ମୁଖରଶିଖରେ ଲୀନାଦୀନାପ୍ୟୁବାଚଃ ରହଃ ସଖୀଂ ।

ଚୋଲ ।

ଲଲିତା ବିଶାଖା, ବେନି ସଖିସନେ, ବିହରଅଁ ବନେ ଶ୍ରୀରାଧେ ।
ସାଧାରନ ପ୍ରେମେ, ଉତ୍କର୍ଷା, ଈର୍ଷା, ବଶେ ମନେ ମନେ ସଙ୍କୋଚେ ।
ମତ୍ତ କରୀନ୍ଦ୍ର ଗାମିନୀ, ମୃଦୁ କମ୍ପନ ନାସା ନଥିନୀ ଗୋ । ୧ ।
କୁଟିଲ ତାରମା, ଭ୍ରୂଲତା କାର୍ମୁକେ, କାଜଲ ଶିଞ୍ଜିନ ପୁରନ ।
ବିଶେଷେ ବିଶାନ, ନୀଳୋତ୍ପଳ ବାନ; ତେଜନ୍ତି ଈକ୍ଷନ ତୀକ୍ଷନ ।
ମନ୍ଦ ସନ୍ଧାନ ମାଧୁରୀ; କୈଲ ପ୍ରୟୋଗ ଗୋବିନ୍ଦ ହେରି ଗୋ ।
ହେରି ଅଥଯ଼ ମୁରଲୀଧାରୀ ଗୋ । ୧ ।
ଗୋପୀ ଗୋପୀନାଥ; ସମ୍ମତ କହିତ; ଲୋଚନ କରିତେ ଚଲିଲ ।
ଅନ୍ତୁନେର କୁଞ୍ଜେ; ମଧୁବ୍ରତପୁଞ୍ଜେ; ଝଙ୍କୃତ ନିନାଦ ଶୁନିଲ ।
ତାତେ ମିଲଅଁ ଶ୍ରୀମତୀ । ପ୍ରାନ ସଖିରେ ରଙ୍ଗେ ଭାରତୀ ଗୋ । ୩ ।
ମଯ଼ୂର ଚନ୍ଦ୍ରିକା; ଚୂଡ଼ା ମନୋହର; ତାର ତଳେ ବେଢ଼ା ମଲ୍ଲୀ ଗୋ ।
ଖଞ୍ଜୀ ଗୋଟି ଚମ୍ପା; ନିଶାଖା ଢେଉଙ୍କା, ଏମନି ଝଲକା ଝଲି ଗୋ ।
ଯେନ କାଲ ମେଘ ପାଶେ; ପୁରନ୍ଦର ଧନୁ ଶୋଭା ଦିଶେ ଗୋ । ୪ ।
ମଦନ ମୋହନ; ମୋହନ ଅଧରେ; ମୋହନ ପିଯ଼ୂଷ ସାଜେ ଗୋ ।
ତାତେ ପାନକରି; ମୋହନ ମୁରଲୀ; ମଧୁର ମଧୁର ବାଜେ ଗୋ ।
ଝମ୍ପେ ଝଲକ କପୋଲେ । ତାତେ ଚୁମ୍ବିତେ କଖନ ଚଲେ ଗୋ । ୫ ।
ବିପୁଲ ପୁଲକ; ଶ୍ରୀଭୁଜ ପଲ୍ଲବ; କତ ନାରୀ ଆଲିଙ୍ଗନେ ଗୋ ।
ଘନ ଅପଘନ; ରତ୍ନଆଭରନ; ମିଣେ ଯେନ ଅଙ୍ଗେ ଘନେ ଗୋ ।
ସଖି ଆମି କି ବାତୁଲ; ଦଖି ପରିହାସ ନା-କଇଲ ଗୋ । ୬ ।
ବାନ୍ଧୁଯ଼ବ ନବ; ପଲ୍ଲବ ଅଧର ଦରହାସେ ମନୋରମ ଗୋ ।
ଗୋଜ ହୈଛେ ବଧ; ବଦନ ଚୁମ୍ବନେ; ମଦାଧ କଲିକା ସମ ଗୋ ।

ସଖି ଅମି କ ବାଉଲ; ଦଖି ପରହାସ ନା କଇଲ ଗୋ । ୭ ।
ମକର କୁଣ୍ଡଲ; ମନୋହର ଗଣ୍ଡ; ସ୍ଥଳେଭେ ଖେଲଇ ଦୋଲି ଗୋ ।
ପୀତବାସ ଠାନି; ମୁନିଗନ ମନ; ମନସିଜେ ଦଏ ଘାଲି ଗୋ ।
ସୁର ଅସୁର କନ୍ଦର; ବାରେ ହେଉ ହିବେ ପରକର ଗୋ । ୮ ।
କଦମ୍ବ ତଳରେ; ହେଉ ହେନ ବେଲ; ଉୟ ଉପୁକାଯୁଁ ଛନେ ଗୋ ।
ନୂଅ ଗ୍ରେର ପର, ତରଙ୍ଗ ଗୁହାର୍ନି; ସେଇତ ପଡ଼ିଲ ମନେ ଗୋ ।
ସଖି ଅମି କ ବାଉଲ; ଦଖି ପରିହାସ ନାକଇଲ ଗୋ । ୯ ।
ବୋଲେ ଶ୍ରୀଚନ୍ଦନ, ସକଲି ବଧୁର; ଅଧରୁ ମଧୁର ମଧୁ ଗୋ ।
ମରଦ ଖାଇଅ; ମଧୁରପୁ ନାମ ବହୁଛେ ଗୋକୁଲ ବଧୂ ଗୋ ।
ରସ ଉପାସିକ ଜନେ; ତାର ରଚନ ସ୍ମରହ ମନେ ହେ । ୧୦ ।

ଶ୍ଲୋକଃ ।

ଗଣୟତ ଗୁଣଗ୍ରାମଂ ଭ୍ରମ୍ୟ ଭ୍ରମାଦ୍‌ବପିନେ ହତେ ।
ବହତ ଚ ପରତୋଷଂ ଦୋଷଂ ବମୁଞ୍ଚତ ଦୂରତଃ ।
ଯୁବତୀଷୁବଲତୃଷ୍ଣେ କୃଷ୍ଣେ ବହାରଣୀ ମାଂ ବନା ।
ପୁନରପି ମନୋ ବାମଂ କାମଂ କରୋତ କରୋମି କଂ ।

ଦୀର୍ଘଛନ୍ଦ ।

ତବେ ନବୀନ କଣୋଟି; ସାଥେ ଲୟୁଁ ସହଚର୍; ଅଛୁନେର କୁଞ୍ଜବନେ ଭ୍ରମେ । ମନେ ପ୍ରାଣନାଥ ସ୍ମର; ହୃଦୟେ ଉତ୍କଣ୍ଠା ଭର: ଅବେଶ ଜାବେଣ ଗୁନ ଗ୍ରାମେ ଗୋ । ସଖି ଗୋ; ପୁନରପି କାମ କେଲ ଦୁଃଖୀ ଗୋ; ଅବେ କ କରବ କହ ଦଖି ଗୋ ॥ ଲଳିତା ସଖିରେ ଭାଷେ, ବନ୍ଧୁକେ ମୁଅଲ ଦୋଷେ; ବହୁଲ ଅପରତୋଷ ଚିତ୍ତେ । ଯୁବତୀ ସମୁହେ ବିଷ୍ଣୁ; ହେଲ ରସରାଜ କିଷ୍ଣୁ; ଅମି ହେଲ ବରହଣୀ ମତେ ଗୋ । ସଖି ଗୋ; ପୁନରପି କାମ କେଲ ଦୁଃଖୀ ଗୋ । ଅବେ କ କରବ କହ ଦଖି ଗୋ ॥ ସତେ ଅଜ ନିଶିମାତେ; ଯାବ ନଭୃତ ନକୁଞ୍ଜେ; ଏକାନ୍ତେ ବସିଅ ଥିବ ବନ୍ଧୁ । ସକଳି ଦଗକେ ଗୃହିଁ; ଚକତ ହଇଯୁଁ ରହୁ ଲୁକଅଁ ହେରବ ବ୍ରଜବନ୍ଧୁରେ । ସଖି ରେ; ହସିଅଁ କରବ କୋଲ ସେହ୍ନ ରେ; ବଲେ ଅମାର ଗଲେ ମିଲିଁ ଯାଇରେ ॥ ପ୍ରଥମେର ସମାଗମ, ଲଜ୍ଜିତେ ହେବଅଁ ଶ୍ୟାମ ରଞ୍ଜିବ ବନୟ ଅନକୁଲେ । ମଦନେର ମନୋରଥ; ସବ-କାରେ ହବେ ସ୍ୱାର୍ଥ; ରଞ୍ଜିବ ଅମାର ସନେ ସେଇରେ । ସଖିରେ; ଉଦାର ବେଣି ମଥନ ହୋଇ ରେ । ମନ୍ଥନକରେ ସ୍ତନେ କର ଲଇଁ ରେ । ୪ । ନବୀନ ପଲ୍ଲବ ଶେଯେ; ସୁତଅଁ ମୋହନ ରାଜେ; ଶୁଅବ ଅମାକେ ଉରପରେ । କର

ଗାଢ଼ ପରରମ୍ଭ ଧବେ ଗଣ୍ଡେ ଗୃନ୍ଥ ଚୁମ୍ବ, ଗୃଶିବ ଅଧରୁ ସୁମଧୁର ରେ । ସଖିରେ, ଉଦାର କେଶି ମଥନ ହୋଇ ରେ, ମନ୍ଥନ କରେ ସ୍ତନେ କର ଲଇ ରେ । ୫ । ଅଳସିତରେ ଉନ୍ନତଃ ଲୋଚନ ଯୁଗ ଘୂର୍ଣ୍ଣତ; ପୁଲକେ ଲଲିତ ସୁ-କ-ପୋଳ । ଶ୍ରମଜଳେ ଜଳଧର; କମ୍ପମାନ୍ତ କଳେବର; ମଦନ ଉନ୍ମାଦେ ଅତ ଲୋଳ ରେ । ସଖିରେ ଉଦାର କେଶି ମଥନ ହୋଇରେ; ମନ୍ଥନ କରେ ସ୍ତନେ କର ଲଇ ରେ । କାମ ବୀଜ ସ୍ତୋତ୍ର ମନ୍ତ୍ର; କୋକିଳ କଳ କୁଜିତ; ଶୁନକେଶୁଁ ଗାତ୍ର ଶ୍ଳଥ ହବେ । ହେନବେଳ ଘନସ୍ତନେ; କାନ୍ତ ନଖ ତୀକ୍ଷ ମୂନେ; ମାର ଜୟ ନଖେ ଲିଖି ଧବେ ଗୋ । ସଖି ଗୋ, ଉଦାର କେଶି ମନ୍ଥନ ହୋଇ ଗୋ; ମନ୍ଥନ କରେ ସ୍ତନେ କର ଲଇଁ ଗୋ ॥ ସୁରତେ ପରବୃତ୍ତ; ମନ ନୁପୁର ଝୁଣାତ; ଚରନେ ବାଜବ ତାନମାନ । ବାଜବ କଟି କିଙ୍କିନ; ନାଚବ ନାଶା ନଥିମଣି; କୁଚ ଉହେ ଉଖିବ ଚୁମ୍ବନ ରେ । ସଖିରେ, ଉଦାରକେଶୀ ମଥନ ହୋଇ ରେ; ମନ୍ଥନ କରେ ସ୍ତନ କର ଲଇଁରେ । ୮ । ସୁରତ ରସେ ଅଳସ; ନୟାନ ପଙ୍କଜକୋଷ, ରବ-ଦୂ ଉଦୟେ ଫେରୁ ମୁଦ । ଅମି ଶ୍ୱାସ ଢେଳ ଯବେ; ମଦନ ମୋହନ ତବେ; ମନମଧ୍ୟେ ହଇବେ ଉନ୍ମାଦ ରେ । ସଖିରେ, ଉଦାରକେଶୀ ମଥନ ହୋଇ ରେ; ମନ୍ଥନ କରେ ସ୍ତନେ କର ଲଇଁରେ । ୯ । ରସିକ ବୃନ୍ଦ ସୁନ୍ଦର; ମଧୁବନ ପୁରନ୍ଦର; ମୋହନ ମାନସେ ଭବ ରାଧା । ଉତ୍କଣ୍ଠା ନାୟିକା ହଏ; ଶ୍ରୀଚନ୍ଦନ ଅବେ ଧ୍ୟାଏ; କବେ ଯାବେ ଆମାର ମନବାଧା ଗୋ । ସଖି ଗୋ । ଉଦାରକେଶୀ ମଥନ ହୋଇ ଗୋ; ବଲେ ଆମାର ଗଲେ ମିଲ୍ୟା ଯାଇ ଗୋ ॥

ଶ୍ଳୋକଃ ।

ହସ୍ତସ୍ରସ୍ତବିଳାସବଂଶମନୃଜ୍ଜ ଭ୍ରୂବଲ୍ଲୀ ମନ୍ଦଲ୍ଲବୀ
ବୃନ୍ଦୋତ୍ସାରଦୃଗନ୍ତ ବୀକ୍ଷିତମତ ସ୍ୱେଦାର୍ଦ୍ର ଗଣ୍ଡସ୍ଥଳଂ ।
ମାମୁଦ୍ଵୀକ୍ଷ ବିଲକ୍ଷିତ ସ୍ମିତସୁଧାମୁଗ୍ଧାନନଂ କାନନେ ।
ଗୋବିନ୍ଦଂ ବ୍ରଜସୁନ୍ଦରୀଗଣବୃତଂ ପଶ୍ୟାମି ହୃଷ୍ୟାମିତ ।

ଦୀର୍ଘ ଛନ୍ଦ ।

ଶୁନ ଅଗୋ ସହଚର; ଗୋବନ୍ଦ ବ୍ରଜସୁନ୍ଦର; ବୃନ୍ଦଲୟେଁ । କେଳି କରୁଛିଲ । ତାକେ ଦେଖି ଅମି ହାସି; ଢଲ ଯବେ ମୋହନବଂଶୀ; ହସ୍ତ କାମ୍ପି ଖସିୟା ପଡ଼ିଲ ଗୋ । ସଖି ଗୋ । ଥର୍ୟାଗେଲ ଅମାକେ ସେ ଦେଖି ଗୋ; କେନେ ଦେଖିଲ ତାକେ ଅମି ଦୁଃଖୀ ଗୋ । ୧ । ନୀଳମନି ଭ୍ରୂବଲତା; ନନ୍ଦନ ଯେନ ଭୃଲତା; ଯନୁକରେ ଗୋପିକାର ତୁଲେ । ସେ ଚଞ୍ଚଳ କୁଥା ଗେଲ; ସୁସମକଣ୍ଠ କପୋଲ; ଗଣ୍ଡସ୍ଥଳ

ପୂର୍ଣ୍ଣ ସ୍ୱେଦ ଜଳେ ଗୋ । ସଖି ଗୋ; ଥରୁଆ ଗେଲ ଆମାଙ୍କ ସେ ଦଶା ଚୋ;
କେନ କେଲ ତାଙ୍କେ ଅମି ଦୁଃଖୀ ଗୋ । ଅଧର କରେ ବିଡ଼ମ୍ବ; ଉସ ସ୍ଥାନ
ପକ୍ୱବିମ୍ବ; ତାତେ ଛୁଲ କତ ସୁଧାରସ । କୁଆଁ ସେ ଶୁଣିଅଁ ଟେଲ; ମିଠା ସ୍ଥାନେ
ସିଠା ହେଲ; ଧବ୍‌ ସ୍ୱେର ଯେମନ୍ତ ବିରସ ଗୋ । ସଖି ଗୋ, ଥରୁଆ ଟେଲେ
ଅମାଙ୍କେ ସେ ଦଶା ଚୋ; କେନେ ଟେଲ ତାଙ୍କେ ଅମି ଦୁଃଖୀ ଗୋ ।

ଶ୍ଳୋକଃ ।

ବୁରନ୍ନେକ ସ୍ତ୍ରୋକ ସ୍ତବକନବକା ଶୋକକଳକା-
ବିକାଶଃ କାସାରେ ପବନଂପବନୋଽପି ବ୍ୟଥୟତ ।
ଅପି ଭ୍ରାମ୍ୟ ଭୃଙ୍ଗୀରଣିତରମଣୀୟାନ ମୁକୁଳ-
ପ୍ରସୂତ ଶ୍ଚୂତାନାଂ ସଖି ଶିଖରଣୀୟଂ ସୁଖୟତ ।

ଦୀର୍ଘଛନ୍ଦ ।

ତାଙ୍କେ କେଲ ଅମି ଦୁଃଖୀ; ଅବେ ହେଲ ନବମାଣି; ଦୂରନ୍ତ ନେକନ-
ସ୍ତ୍ରୋକବର । ସ୍ତବକ ନବମାଲକା; ନଅଲ ଶୋକ କଳକା; ବିକାଶ କାସାରେ
ହୁମାଧୁରୀ ଗୋ । ସଖି ଗୋ, ସେଇ ଅବେ ଅଚ୍ଛା ସୁଖ ଦଏ ତାଙ୍କେ ଦଖି କାମେ
ଅମାର ଗାଏ ଗୋ । ୧ । ଉପବନେର ପବନ, କଥା କରେ ଉନମନ, ଭୃଙ୍ଗି
ଭୃଙ୍ଗ ଭ୍ରମେ ମତ୍ତଭରେ । ରମନ୍‌କରେ ଚୂତବନେ, ମୁକୁଳ ମକରନ୍ଦପାନେ,
ରମଣୀୟ ଝଙ୍କୃତ ସୁସ୍ୱରେ ଗୋ । ସଖି ଗୋ, ସେଇ ଅବେ ଅଚ୍ଛା ସୁଖ ଦଏ,
ତାଙ୍କେ ଦଖି କାମେ ଅମାର ଗାଏ । ୨ । ଅଭିନବ ଘନଶ୍ୟାମ, କୋଟିକାମ
ଅଭିରାମ, ସୁରସ ସନ୍ଦୋହ ପୁରନ୍ଦର । ସକଲି ଇନ୍ଦ୍ରିୟ ଗନ, ତାଙ୍କେ ଅବେ
କର ଧ୍ୟାନ, ଶ୍ରୀଚନ୍ଦନ ବୋଲେ ସେ ତୁମାର ଗୋ । ଶ୍ରୀରାଧେ, ଅରାଧନା କର-
ଅଛ ସଦା; ଅବେ ଯେନ ତୁମାର ନାମ ରାଧା ଗୋ । ୩ ।

ଡୁହା ।

ରାଈ ବୋଲେ ଗୃହଁ ଲଲିତାଙ୍କେ, ସମ ନଏ ସଖି କାମ ତାଙ୍କେ । ୧ ।
ସମ ନଏ କାମ ସମ ନଏ, ରସମୟ ତନୁ ଶ୍ୟାମରାୟ । ହବେନାଇ ହବେନାଇ
ହବାର ନାଇଁ ଗୋ, ନୀଲମଣି ତନୁ ତୁଲ ନାଇଁ ଗୋ । ୩ ।

ଶ୍ଳୋକଃ ।

ସୌନ୍ଦର୍ଯ୍ୟାମୃତସିନ୍ଧୁଭଙ୍ଗଲଲନାଚିତ୍ତାଦ୍ରିସଂପ୍ଲାବକ ।
କର୍ଣ୍ଣାନନ୍ଦସନର୍ମରମ୍ୟବଚନା କୋଟୀନ୍ଦୁଶୀତାଙ୍ଗକଃ ।
ସୌରଭ୍ୟାମୃତସଂପ୍ଲବାବୃତଜଗତ୍ପୀୟୂଷରମ୍ୟାଧର ।
ଶ୍ରୀଗୋପେନ୍ଦ୍ର ସୁତଃ ସଂକର୍ଷତି ବଲାତ୍ପଞ୍ଚେନ୍ଦ୍ରିୟାଣ୍ୟାଲମେ ।

ଦୀର୍ଘଛନ୍ଦ ।

ଶ୍ରୀଅଙ୍ଗ ଅହ୍ଲାଦ ମଧ୍ୟେ; ଭତ୍ର ଚନ୍ଦ୍ର ଧ୍ୱସ୍ତ ହୁଏ; ବଢ଼ିଯାଏ ସୌଭାଗ୍ୟ ମୃତନଦୀ । ବୃନ୍ଦାବନ ବନଭୂଇଁ: ସବଦଗ ଦୃଷ୍ଟିହୋଇ; ଚଉଦ ଭୁବନ ଯାଯୁ ଭେଦ ଗୋ । ସଖି ଗୋ; ଅମିତ ଅବଲା ବଲାତ୍କାରେ: ପଞ୍ଚେନ୍ଦ୍ରିୟ ଅକର୍ଷନ କରେ ଗୋ । ତନୁ ଭଗ୍ନଓଲ ସିତଙ୍କାରେ ଗୋ । ୧ । ବାଲ ଅରୁଣ ପ୍ରବାଲ; ବନ୍ଧୂକ ନବଦଲ; ଉପସ୍ଥାନ ପକ୍ୱ ବିମ୍ବାଧର । ଅଖିଳ ଲାବଣ୍ୟ ପୂର; ପିୟୂଷ ରସ ମନ୍ଦର: ଛାଡେ ମନ୍ଦହାସ ସୁମଧୁର ରେ । ସଖି ରେ; ଅମିତ ଅବଲା ବଲାତ୍କାରେ; ପଞ୍ଚେନ୍ଦ୍ରିୟ ଅକର୍ଷନ କରେ ଗୋ । ୨ । ବୃନ୍ଦାବନ ପୂର୍ଣ୍ଣ ଇନ୍ଦୁ; ସୌନ୍ଦର୍ଯ୍ୟ ଅମୃତ ସିନ୍ଧୁ; ଏକ ବିନ୍ଦୁ ଜଗତ ଡୁବାଏ । ଉମା ରମା ଶଚୀ ଆଦ, ଲଳନା ମାନସ ଅଦ୍ରି; ଉନ୍ମତ୍ତ ଧ୍ୱଂସନେ ବଜ୍ର ହୁଏ ଗୋ । ସଖି ଗୋ ଅମିତ ଅବଲା ବଲାତ୍କାରେ; ପଞ୍ଚେନ୍ଦ୍ରିୟ ଅକର୍ଷନ କରେ ଗୋ । ୩ । କର୍ଣ୍ଣାନନ୍ଦ ପରହାସ; ରମ୍ୟ ମନୋହର ବେଶ; ଲବନି ମଞ୍ଜୁଳ ସୁକୋମଲ । ଦ୍ରାକ୍ଷାରୁ ସୁସ୍ୱାଦୁ ପୂର; ଅମୃତରୁଁ ଅତି ମଧୁର; ଚନ୍ଦନୁ ଅଧିକ ସୁଶୀତଲ ଗୋ । ସଖି ଗୋ ଅମିତ ଅବଲା ବଲାତ୍କାରେ, ପଞ୍ଚେନ୍ଦ୍ରିୟ ଅକର୍ଷନ କରେ ଗୋ । ୪ । ଶ୍ରୀଗୋପେନ୍ଦ୍ର ନନ୍ଦସୁତ, ସର୍ବ୍ବ ବ୍ରତ ବିଭୂତ, ନାରୀ ମନ ରତ୍ନ ଅଲଙ୍କୃତ । ଗୋପୀ ନେତ୍ର ନୀଳୋତ୍ପଲ; ମାଲ୍ୟ ସର୍ବାଙ୍ଗେ ଏ ଚଞ୍ଚଳ; ମନ୍ମଥ ମନ୍ମଥ ଅଗ୍ରାକ୍ରାନ୍ତ ଗୋ । ସଖି ଗୋ ଅମିତ ଅବଲା ବଲାତ୍କାରେ, ପଞ୍ଚେନ୍ଦ୍ରିୟ ଅକର୍ଷନ କରେ ଗୋ । ୫ ।

ଡୁହା ।

ବୃନ୍ଦାବନ ଚନ୍ଦ୍ର ପୂର୍ଣ୍ଣ ଇନ୍ଦୁ; ରସିକ ଶେଖର ବ୍ରଜବନ୍ଧୁ । ୧ ।
ଦ୍ରାକ୍ଷାରୁ ଅଟେ ଅତି ମଧୁର; ଚନ୍ଦନୁ ଅତ୍ୟନ୍ତ ସୁଶୀତଲ । ୨ ।
ଅମିତ ଅବଲା ନାରୀଗନ; ପଞ୍ଚେନ୍ଦ୍ରିୟ କରେ ଅକର୍ଷନ । ୩ ।
ମନ୍ମଥ ପୀଡ଼େ ଅମାର ଗାଏ; କି କରିବୁଁ କହସି ଉପାଏ । ୪ ।

ଶ୍ଲୋକଃ ।

ନବାମ୍ବୁଦଲସଦ୍ଦ୍ୟୁତିନବତଡୀ ନ୍ମନୋଜ୍ଞାମ୍ବରଂ ।
ତ୍ରିଭଙ୍ଗୀରୁଚିରସ୍ଥିତ ଲଲିତବନ୍ୟ ବେଶୋଜ୍ଜ୍ୱଲଃ ।
ସୁଧାଂଶୁମଧୁରାନନଃ କମଲକାନ୍ତର୍ଯଲ୍ଲୋଚନଂ ।
ଶ୍ୟାମ ମଦନମୋହନଃ ସଖି ତନୋତି ନେତ୍ର ସ୍ପୃହାଂ ।

ଦୀର୍ଘଛନ୍ଦ ।

ଅଭିନବ ଜଳଧର; କମନୀୟ କଳେବର; ଧିକ୍କୃତ କରଇ ନୀଳମଣି । ଝଟଝଟ ବିଦ୍ୟୁଝଟୀ; ପରିଧାନ ପୀତପଟୀ; ସୁରୁଚିର ତ୍ରିଭଙ୍ଗିମା ଠାଣି ଗୋ ।

ସଖି ଗୋ । ଏଇ ମୂର୍ତ୍ତି ପ୍ରତେ ହଏ ନେବେ । ପୁଲକ ପୂରଇ ଅବେ ଗାବେ ଗୋ । ୧ । ସୁଲଳିତ ବନ୍ୟବେଶ, ମନୋହର ମକର୍‌ଭ୍ରଂଶ, ଶିରେ ଶୋଭା ରଙ୍ଗ ଯାମୁଡ଼ାଳି । ନବୀନପଲ୍ଲବ ପୁଞ୍ଜ, ନୀଅଳି ସ୍ତବକ ସ୍ୱଚ୍ଛ, ଅଜାନୁଲମ୍ବିତ ବନମାଳୀ ଗୋ । ସଖିଗୋ । ଏଇ ମୂର୍ତ୍ତି ପ୍ରତେ ହଏ ନେବେ । ପୁଲକ ପୂରଇ ଅବେ ଗାବେ ଗୋ । ୨ । ନିର୍ମଳ ଶରଦପୂର୍ଣ୍ଣ-ସୁଧାଂଶୁ ମଧୁରବଦନ, ଝଲକ କନ୍ଦର୍ପ ଦରପନ । ଅମଳ କମଳଦଳ, ଜିନ ନୟାନ ଯୁଗଳ, କିବାମତ ମଦନମୋହନ ଗୋ । ସଖି ଗୋ । ଏଇ ମୂର୍ତ୍ତି ପ୍ରତେ ହୟେ ନେନେ, ପଲକ ପୂରଇ ଅବେ ଗାବେ ଗୋ ॥

ଡୁହା,

ସୁଲଳିତ ଲାବଣ୍ୟ ସେ ବେଶ । ମନ ମଧୁକରେ ହଏ ଭ୍ରଂଶ । ୧ ।
ଶିରେ ଶୋଭା ରଙ୍ଗ ଜାମୁଡ଼ାଳି । ଧଏ କାମିନୀର ଧୈର୍ଯ୍ୟ ଟାଳି ।୨।
ନବୀନ ପଲ୍ଲବ ତଥି ସାଜେ । ନୀଅଳି ସ୍ତବକ ମନ ଗଞ୍ଜେ । ୩ ।
ଅଜାନୁଲମ୍ବିତ ବନମାଳ । ପୁଲକିକରେ ହୃଦ ଅମାର । ୪ ।
ନିର୍ମଳ ଶରଦ ପୂର୍ଣ୍ଣାନନ । ଝଲକ କନ୍ଦର୍ପ ଦରପନ । ।୫ ।
ଅମଳ କମଳ ଜିନ ନେତ୍ର । କୁଳବତୀର ସ୍ୱରେ ମହତ୍ତ୍ୱ ।୬।

ଶ୍ଳୋକଃ ।

ନବଜଳଦ ନିଃସ୍ୱନ ଶ୍ରବଣ କର୍ଷ ମିଶ୍ରିତ ।
ସନତ୍ରବଚନାମୃତେ ସ୍ନପିତ କାମିନୀମାନସ ।
ରମାଦିକା ବରାଙ୍ଗନା ଶ୍ରବଣହାରୀ ବଂଶୀକଳ ।
ଗମେ ମଦନମୋହନ ସଖି ତନୋତୁ କର୍ଣ୍ଣସ୍ପୃହାଂ ।

ଦୀର୍ଘଛନ୍ଦ ।

ନାରୀପୂର୍ଣ୍ଣ ମନୋହାରୀ, ଲକ୍ଷ୍ମୀର ଶ୍ରବଣହାରୀ, ସ୍ତମ୍ଭନ ମୋହନ ଉଚ୍ଚାଟନ । ଅବ୍ୟକ୍ତ ମଧୁରଯନ୍ତ, କାମ ଉଦ୍ଦୀପନମନ୍ତ ମଦନମୋହନ ବଂଶୀସ୍ୱନ ଗୋ । ସଖି ଗୋ । ସେଇ ଧ୍ୱନି ଶୁଦ୍ଧେ ଅବେ କାନେ, କାନେ ପଶି ଅମାର ପ୍ରାଣ ଟାଣେ ଗୋ । ଗମ୍ଭୀର ଜଳଦଘୋଷ, ବଂଶୀସ୍ୱନ କରେ ଧ୍ୱଂସ, ସ୍ତମ୍ଭନ ଗୁନ ଛାଡେ । ପତତ୍ରିତା ବ୍ରତମନ, ମନ୍ଥନେ କରାଏ ସ୍ୱନ ପରିହାସ ବଚନ ଅମୃତେ ଗୋ । ସଖି ଗୋ । ସେଇ ଧ୍ୱନି ଶୁଦ୍ଧେ ଅବେ କାନେ ପଶି ଅମାର ପ୍ରାଣ ଟାନେ ଗୋ ॥

ଡୁହା ।

ସ୍ତମ୍ଭନ ମୋହନ ଉଚ୍ଚାଟନ, କର୍ଣ୍ଣେ ବାଜ କରଇ ଜ୍ୱଳନ ।୧।
ଅବ୍ୟକ୍ତ ମଧୁର ଧ୍ୱନି ପୂରି, କାମ ଜ୍ୱଳାଦେ ହୃଅଇ ଘାରି । ୨ ।

ମଦନ ମୋହନ ବଂଶୀ ସ୍ୱନ, ଦହଇ ଅମାର ପଞ୍ଚପ୍ରାନ । ୩ ।

ଶ୍ଳୋକଃ

କୁରଙ୍ଗ ମଦଜିଦ୍‌ବପୁ ପରିମଳୋର୍ମିକୃଷ୍ଟାଙ୍ଗକ ।
ଶକାଙ୍ଗ ନଳିନାଷ୍ଟକେ ଶଶୀ ଯୁତାବ୍‌ଜଗନ୍ଧଃ ପ୍ରଥ ।
ମଦେନ୍ଦୁବରଚନ୍ଦନାଗୁରୁ ସୁଗନ୍ଧ ଚର୍ଚ୍ଚିତ ।
ଶମେ ମଦନମୋହନ ସଖି ତନୋତି ନାସାସ୍ପୃହାଂ ।

ଦୀର୍ଘଚ୍ଛନ୍ଦ ।

ମୃଗମଦ ମଦଜିତ, ବପୁ ଅପ୍ରକୁର୍ବ ମିତ, ପରସିଲ ଲହର ତରଙ୍ଗ । ସେ ଅଙ୍ଗେ ଅଷ୍ଟ ନଳିନ, ସୌରଭ କର୍ପୂର ଉଦ୍ଭିନ, ଚନ୍ଦ୍ର ପଦ୍ମ ସୁଶୀତଳ ସଙ୍ଗରେ । ସଖିରେ; ସେଇ ଗନ୍ଧ ଅସଇ ନାସାନ୍ତେ, ଅଘ୍ରାନ କରିବ ଅଚମ୍ବିତରେ । ପୁନଃ ପୁନଃ ସ୍ନେହ କରେ, ପାପ ନାସା ଅଣ୍ଡିଭରେ, ମଦନମୋହନ ସୁଗନ୍ଧତେ ରେ । ଚନ୍ଦନ ଚର୍ଚ୍ଚିତ ଗୃହୁ, ଚର୍ଚ୍ଚିତ ଗୁରୁ ଅଗୁରୁ, ମଲ୍ଲିକାଦି ପାରିଜାତ ମାଲ । ଶୋଭା ନଦୀ ବଢ଼ାଓଲ, ସକଲି ସୁଗନ୍ଧ ଜଲ, ଡୁବାଇଯାଁ ନାସା ବେନି କୂଲ ଗୋ । ସଖି ଗୋ, ସେଇ ଗନ୍ଧ ଅସଇ ନାସାତେ, ଅଘ୍ରାନ କରିବ ଅଚମ୍ବିତେ ଗୋ । ଅଘ୍ରାନ କରତେ ଗନ୍ଧ, ମନ ହଇଛେ ଅନନ୍ଦ, ଅମି ଅଭାଗିନୀ କର୍ମହୀନ ଗୋ । ଧନ୍ୟା କନ୍ୟା ଗନସଙ୍ଗେ, ବିହାର କରିଲ ରଙ୍ଗେ, ସେ ଲଗି ଦହଇ ପଞ୍ଚପ୍ରାନ ଗୋ । ସଖି ଗୋ, ତା ଲଗି ହଇନୁ ଅମି ଦୁଃଖୀ, ଅବେ କି କରିବ କହ ସଖି ଗୋ । ୩ ।

ଶ୍ଳୋକଃ

ହରିନ୍ମଣି କବାଟିକା ପ୍ରତତ ହାରି ବକ୍ଷସ୍ଥଳେ ।
ସ୍ମରାର୍ତ୍ତ ତରୁଣୀ ମନଃ କଳୁଷ ହାରି ଦୋହର୍ଗଳ ।
ସୁଧାଂଶୁ ହରି ଚନ୍ଦନୋତ୍ପଳ ଶିତାଭ୍ରସିତାଙ୍ଗକ ।
ଶମେ ମଦନମୋହନ ସଖି ତନୋତି ବକ୍ଷସ୍ପୃହାଂ ।

ଦୀର୍ଘଚ୍ଛନ୍ଦ ।

ମହୀନ୍ଦ୍ର ନୀଲ କପାଟ, ତାର ଭୁଜ ବକ୍ଷ ତଟେ, ଝଟ ଝଟ ରସାନ ଯେମନ୍ତ । ସ୍ମରାର୍ତ୍ତୀ ତରୁଣୀ ମନ, କଳୁଷ ତାପ ମୋଚନ, [illegible] ଅର୍ଗଲ ବାହୁ ବେନି ରେ । ସଖିରେ, ହୃଦେ ଅମାର ଏଇ ସ୍ପୃହା ହଏ, କେ ଅନି ମିଲାବ ଗାଏ ଗାଏ ରେ । ଚନ୍ଦ୍ର ଚନ୍ଦନ ଉତ୍ପଳ, ଶୁଭ୍ର ଅଭ୍ର ସୁଶୀତଳ, ସର୍ବାଙ୍ଗ ଅହ୍ଲାଦ ସୁମାଧୁରୀ । ସେଇ ଅଙ୍ଗେ ଅଲିଙ୍ଗନ, ଦବେ ମଦନ ମୋହନ, ସତେ ଏଇ ଭାଗ୍ୟ ଅଛେ କାର ଗୋ । ସଖି ଗୋ, ହୃଦେ ଅମାର ଏଇ ସ୍ପୃହା ହଏ; କେ ଅନି ମିଲାବ ଗାଏ ଗାଏ

